# ଲାଠୋରରେ ଦଳିତ ପ୍ରତି ହିଂସା :
# ଏକ ରିପୋର୍ଟ

ପ୍ରକାଶନ : ଅନ୍ୱେଷା

ପ୍ରକାଶକ : ଦାଶରଥି

ଫଟୋ : ସରୋଜ

ଡ଼ିଟିପି : ଆନନ୍ଦ,ସମ୍ବଲପୁର

ମୁଦ୍ରଣ : ଶିକ୍ଷା ପ୍ରକାଶନୀ, ଭୁବନେଶ୍ୱର,ଓଡ଼ିଶା

ପ୍ରକାଶନ ବର୍ଷ : ୨୦୧୨ ଅକ୍ଟୋବର

ମୂଲ୍ୟ : ୨୦ ଟଙ୍କା ମାତ୍ର



# LATHOR RE DALITA PRATI HINSA:
# EKA REPORT

Publisher : Anwesha

Published By : Dasharathi

Photo : Saroj

DTP : Ananda, Sambalpur

Year of Publication : 2012 October

Price : 20 Rupees only

# ଲାଠୋର

*ଭାରତ ମାଝୀ*

(୧)

ସବୁ ପାଉଁଶ
ଉଲଗୁନିରେ ଶୁଖୁଥିବା କରିଆ
ବଲାଂଗିର ଛକରୁ ଆସିଥିବା କୁନି ଝିଅର ଜୋତା
ବତା ସଂଧିରେ ଗୁଂଜା ହେଇଥିବା ଅଧକଠା ଭାରତ ବିଡ଼ି, ବ୍ୟାଂକ ରସିଦ
ଖୋଲ୍‌ନାରେ ରଖା ହେଇଥିବା ମା'ର ଗୁଡ଼ାକୁ ଡ଼ବା, ବାପାଂକ ଖଇନି,
ତିନି ପୁରା ଧାନ, ଆମ୍ବେଦକରରଚନାବଳୀ, ଭୀମଭୋଇ ଭଜନ ମାଳା
ପଟା ପାଉତି, ପୋଢ଼ର ଦୁଆଁ, ପିଲାଂକ ବସ୍ତାନି ।

ସେ ଦିନ ସଂଜରୁ ଭିର୍‌କା ଛଡ଼ା ପରି ଲାଗୁଥିବ ପବନ
ଡୁମା ଦେଖିଲା ପରି ଚିହିଁକି ଉଠୁଥିବ ବମ୍ବୁର ଗଛ ଜୀଖର ଶୁଖିଲା ଜଂଗ,
ହାଟ ଆଡୁ ସ୍ପଷ୍ଟ ହୋଇ ଆସୁଥିବ ଅସହଣୀ ଭାଂଗ ।

ସେ ଦିନ ସଂଜ କେମିତି ଥିଲା
ଭାଇମାନେ, ମା'ମାନେ, କୁକୁଡ଼ାମାନେ, ପୋଢ଼ମାନେ, ବକ୍‌ରାମାନେ
ଗାଁର ଦେବୀଦେବ୍‌ତାମାନେ
ସେ ଦିନ କେମିତି ଥିଲା ସଂଜ, କେଉଁ ରଂଗର, କେଉଁ ଜାତିର ?
ଗୋଟେ ପଡ଼ା ଶ୍ମଶାନ ହେବାକୁ କେତେ ଦଣ୍ଡ, କେତେ ଲିତା, କେତେ ବେଳ ?

ସବୁ ପାଉଁଶ –
ବିହନ ଛିନା ଗଂଜା, ଗାଁ ମନ୍ଦିର ପ୍ରତିଷ୍ଠା ବେଳର ହରିନାମ
ମାଲ୍ ଗୁଜାରି ବଂଧା
କି ଭୋଟ ଦେଇଗଲା ବେଳର ସ୍ୱପ୍ନ,
ସେଦିନ ସଂଜରେ ସବୁ ନିଆଁର ଗନ୍‌ସନ୍
ଦିଅଁର ଭୋଗ ଭାଗ କଲା ଭଳି
ମଣିଷକୁ ଭିନେ କରୁଥିବା ସେ ଲୋକଟାର ମୁହଁରେ

ରକ୍ତ ଲାଗିଥିଲା, ଦେଖିଥିଲି ସେଦିନ,
ଦିଅଁଙ୍କୁ ଉଠେଇ, ଗାଧେଇ, ଖୁଏଇ, ଶୁଏଇ
ଫେରୁଥିବା ଲୋକଟାର କମଣ୍ଡଳୁ
ପୂଜ ଭର୍ତ୍ତି, ଦେଖିଥିଲି ସେ ଦିନ,
ଚିର ଜୀବିତ ଏତେ ଖେଳ, ପ୍ରକାଶ୍ୟ ଅଥଚ ଗୋପନ !

ଇତିହାସର ଅତର ଛିଟାରେ ମସ୍‌ଗୁଲ ମୁଁ
ପୃଥିବୀର ଆଉ ଗୋଟେ ନାଁ ଦେବାକୁ ବିବ୍ରତ
ବ୍ରାହ୍ମଣ ପୁଅ, ଜାଣେନି ସଂସ୍କୃତ ବିନା ସଂସ୍କୃତରେ ନାମକରଣ ଅଯଥାର୍ଥ
ହାୟରେ, ମୋ ପିତୃପୁରୁଷ ମୁହଁରେ ରକ୍ତ ।

ହେ ଗରିବ ଶାସ୍ତ୍ରମାନେ
ତମକୁ ଭୋଟ ଦରକାର ?
ଦୁଇ ଟଂକିଆ ଋଉଳ ଦରକାର ?
ଯେଉଁ ଖସ୍ତା ବନେଇଥିଲ ତମେ
ସେ ଖସ୍ତାରେ ବଂଧା ତମ ପାଦ,
ଆଜି ଖଡିର ଆଲୁଅରେ
ଫଟ୍ଟା ଦିଶୁଚି ଜ୍ୟୋସ୍ନାର ଚିଖ ବେଦ ।
ହେ ଗରିବ ଶାସ୍ତ୍ରମାନେ,
ତମ ଆଖିରେ ପ୍ରାଚୀନ ତରାର ନିଦ !

ଇତିହାସର ଅତର ଛିଟାରେ ମସ୍‌ଗୁଲ୍ ମୁଁ
ଅନ୍ତ ନାହିଁ, ଅନନ୍ତ ନାହିଁ
କେଉଁ ନକ୍ଷତ୍ରରେ ବିବେକର ଜୁଳୁଜୁଳିଆ ପୋକ,
ହାୟରେ, ଅଭିଶାପ ଆଶୀର୍ବାଦ ଖେଳ
କମଣ୍ଡଳୁର ପୂଜ ବାଜିଲେ ସ୍ୱର୍ଗ ଆଉ ନର୍କ ।
ବଂଚିବାଟା ବି କୁଆଡ଼େ ପାପ
ସ୍ୱପ୍ନ ଢ଼ାଳି, ସ୍ୱେଦ ଗୋଳାଇ ଘର କରିବା ପାପ
ପୁଅମାନେ, ଝିଅମାନେ ମୁହଁ ଟେକି ଋଲିବା ପାପ

ପାପ, କେଉଁ ଅବଲଂବନର ପ୍ରବେଶ,
ସବୁ ପାଉଁଶ !

ଗାଁ ଖୁଲିରେ ଚିତା ଓ ଚୂଲିର ଭେଦ,
ପିଲାର ଖୋଳପା ଛାଡ଼ି ବାପା ହୋଇଥିବା ଈଶ୍ୱର ଆଖିରେ
ଗଲା ରାତିର ନିଦ ।
ଅନୁର୍ବର ପିଣ୍ଡା ତଳେ ଖଣିଜ ଗାଁଭାଇ ଭଗୀରଥ,
ଜଣକ ପରେ ଜଣେ ଅଂଧ ଘାତକ,
ତେଣେ ଜୀବନବୀମା ଡ଼ାଇରୀରେ ହସ,
ସବୁ ପାଉଁଶ !

ଭିର୍‌କା ଛଡ଼ା ପରି ଆଜିର ପବନ
ଖରାର ଗିଲିଗିଲି ଫୁସ୍
ଆକାଶର ଗୋଟେ ପଟେ ଶେଷ ସୂର୍ଯ୍ୟାସ୍ତ,
ଏଇଠୁ ତମପଣର ପାଟିଗଣିତ ।

ଆପେ ଆପେ ଶୁଖିଗଲା
ଦେବୀଦେବ୍‌ତାଂକର ଓଦା ମୁହଁ
ଆପେ ଆପେ ଲିଭି ପାରିଲାନି ନିଆଁ,
ଆପେ ଆପେ ମାଟିର ହାତ ମୁଠାରେ
ଲୁହା ପାଲଟିଗଲା ମୁଠା ମୁଠା ସୁନା
ଆପେ ଆପେ ଲିଭି ପାରିଲାନି ସେମାନଙ୍କର ନାଁ ।

ପ୍ରତିଧ୍ୱନି ଭିତରେ ପ୍ରତିଧ୍ୱନି ଥାଏ ମଣିଷ !
ସବୁ ପାଉଁଶ !
ଭୟରେ ସନ୍ତର୍ପଣରେ
ଚାଲି ଆସୁଥିବେ ସେ ଗାଁର ଗାଈମାନେ, କୁକୁଡ଼ା ବତକମାନେ, ଛେଳି ମେଣ୍ଢାମାନେ
ଭୟରେ, ସଂତର୍ପଣରେ
ଦୋଳବିମାନରେ ଗାଁ ବୁଲୁଥିବେ ରାଧାମାଧବ, ରଥରେ ବସୁଥିବେ ଦିଅଁ,

ମୁଁ ଗୋଟେ ନୂଆର ରୋଗର ବାହକ
ଲକ୍ଷଣ - ଅଂଧ, ମୂକ !

ସାମ୍ନାଘରର ହାତରେ ନିଆଁ
ସାମ୍ନା ଘର ପାଉଁଶ,
ଏବେ ଭୟରେ, ସଂତର୍ପଣରେ
ସେ ଗାଁକୁ ଆସୁଥିବ ନିଆଁ,
ରାଂଧିବାକୁ ଡ଼ରୁଥିବେ ମା'ମାନେ
ଧୂଆଁର ଗଂଧ ବାରିଲେ ଚିହିଁକି ଉଠୁଥିବେ ଛୁଆ ।

ଦୁଇ ହଜାର ଏଗାର ବର୍ଷ ପରେ ବି ହେଲାନି ଭୋର୍,
କ୍ଷମା କରିବୁ,
ଏ ଅଂଧାରରେ ତୋ ପାଖକୁ ଯାଇପାରୁନି ଲାଠୋର୍ !

*********

## ଆରମ୍ଭ:

ଓଡ଼ିଶାର ବଲାଙ୍ଗିର ଜିଲ୍ଲା ଖପ୍ରାଖୋଲ ବ୍ଲକ୍‌ରେ ଅବସ୍ଥିତ ଲାଠୋର ଗାଁ । ଗଲା ଜାନୁଆରୀ ୨୨, ୨୦୧୨ ତାରିଖରେ ସେଠାର ଦଳିତ ପଡ଼ାକୁ ଉଚ୍ଚଜାତିର ଲୋକେ ସଂପୂର୍ଣ୍ଣ ଜାଳି ପାଉଁଶ କରିଦେଲେ । ଦୋଷ ହେଲା ଯେ ଦଳିତ ଯୁବକଟି ଉଚ୍ଚଜାତିର ଜଣକ ଦେନାକରୁ ସାର୍ଟ ଚୋରୀ କରିଛି । ଯୁବକ ଜଣକ କିନ୍ତୁ ସେ ସାର୍ଟ ତାଠୁ କିଣିଥିଲା । ସେଯାହେଉ ଏ ଦୋଷର ପରିଣାମରେ ଯେଉଁଭଳି ଦଳିତ ଘରମାନଙ୍କୁ ଜାଳି ଦିଆଗଲା ତାହା ଥିଲା ଅତ୍ୟନ୍ତ ଦୁଃଖଦାୟକ ଓ ଅପ୍ରତ୍ୟାଶିତ । ଏହା ବିଭିନ୍ନ ଖବର କାଗଜରୁ ଜଣାପଡ଼େ । ମାତ୍ର ପ୍ରାଥମିକ ଅନୁସନ୍ଧାନ ଓ ଅନ୍ୟାନ୍ୟ ରିପୋର୍ଟ ଆଉ କିଛି ରହସ୍ୟ ଉଦ୍‌ଘାଟିତ କରୁଛି । ଦଳିତମାନେ ନିଜର ସାମାଜିକ ଅଧିକାର ଓ ସମାନତା ସାବ୍ୟସ୍ତ କରିବା ହେତୁ ସେମାନଙ୍କ ପଡ଼ାକୁ ପୋଡ଼ି ଦିଆଗଲା ତାର ପ୍ରମାଣ ଏହି ପ୍ରାଥମିକ ଅନୁସନ୍ଧାନରୁ ଜଣାପଡ଼େ । ଲାଠୋରର ଘଣଟାକୁ ଅନୁସନ୍ଧାନ କଲେ ଏହା ମଧ୍ୟ ଜଣାପଡ଼େ ଯେ, ଉଚ୍ଚ ଜାତିର ଏହି ପ୍ରତିକ୍ରିୟା ବହୁ ଆଗରୁ ଭିନ୍ନ ଭିନ୍ନ ଭାବରେ ହୋଇଛି । ଯାହାକୁ ସେସମୟରେ ଦୈନିକ ଖବରକାଗଜମାନେ ରିପୋର୍ଟ କରିନାହାନ୍ତି ।

ଓଡ଼ିଶାରେ ବିଶେଷକରି ଦକ୍ଷିଣ-ପଶ୍ଚିମ ଓଡ଼ିଶାରେ ଦଳିତମାନେ ଏକ ଅଡୁଆ ସ୍ଥିତି ଦେଇ ଯାଉଛନ୍ତି । ଗୋଟେ ପଟରେ ସେମାନେ ସଦାସର୍ବଦା ଜାତିପ୍ରଥା ହେତୁ ଉଚ୍ଚଜାତି ଦ୍ୱାରା ଅପମାନିତ ହୋଇ ଚାଲିଛନ୍ତି । ଅନ୍ୟ ପଟରେ ସେମାନଙ୍କୁ ଆଦିବାସୀ ଗୋଷ୍ଠି 'ଶୋଷକ'ର ଦୃଷ୍ଟିରେ ଦେଖୁଛି । ଯେଉଁଥିପାଇଁକି ସେମାନଙ୍କୁ ଅନେକ ସମୟରେ ଆଦିବାସୀଙ୍କ ରୋଷର ଶିକାର ହେବାକୁ ପଡ଼ିଥାଏ । ଏହା ଆମେ ଉଭୟ କନ୍ଧମାଳ ଓ ନାରାୟଣପାଟଣାରୁ ଦେଖିସାରିଛୁ । ବଲାଙ୍ଗିର ଜିଲ୍ଲାରେ ଗଲା ଚାରିବର୍ଷ ହେଲାଣି ଆଦିବାସୀମାନେ ମିଛ ଜାତିପ୍ରମାଣ ପତ୍ର ପ୍ରସଂଗକୁ ନେଇ ମେଳି ହେବାରେ ଲାଗିଛନ୍ତି । ସେମାନେ ଦଳିତମାନଙ୍କୁ ବିଶେଷକରି ଖ୍ରୀଷ୍ଟିଆନ୍ ଦଳିତମାନଙ୍କୁ ମିଛ ଜାତିପ୍ରମାଣ ପତ୍ର ଦେଇ ସଂରକ୍ଷଣର ସୁବିଧା ନେଉଥିବାର ଦୋଷାରୋପ କରୁଛନ୍ତି । ସେମାନଙ୍କ ଭିତରେ ଦଳିତଙ୍କ ବିରୁଦ୍ଧରେ ଘୃଣା ବଢୁଛି ସମୟକ୍ରମେ ଏହା ଅଧିକରୁ ଅଧିକ ସ୍ପଷ୍ଟ ହେବାରେ ମଧ୍ୟ ଲାଗିଛି ।

ଦଳିତଙ୍କ ପ୍ରତି ଥିବା ଏ ଘୃଣାର ପରିବେଶ ମଧ୍ୟରେ ସେମାନେ ଯେତେବେଳେ ନିଜର କୌଣସି ଅଧିକାର ପାଇଁ ଅଥବା ନିଜ ସମ୍ମାନର ସୁରକ୍ଷା ପାଇଁ ଚେଷ୍ଟା କରୁଛନ୍ତି ସେତେବେଳେ ସେମାନଙ୍କୁ ଉଭୟ ପଟର ରୋଷକୁ ସାମ୍ନା କରିବାକୁ ପଡୁଛି । ସେଭଳି

ପରିସ୍ଥିତିରେ ଜଣେ ହେଉକି ଦଳିତ ସମୁଦାୟକୁ ନେଇ କୋଉଠି ଅତି ଛୋଟ ଘଟଣାଟିଏ ଘଟୁଛି ତେବେ ତାହା ପାହାଡ଼ ସମାନ କ୍ରୋଧ ତିଆରି କରୁଛି । ଉଦାହରଣ ଭାବରେ ବଲାଙ୍ଗିର ଜିଲ୍ଲାର ସଂଇଁତଲା ବ୍ଲକ୍‌ର ସରଫପଡ଼ା ଗାଁରେ ଜଣେ ଆଦିବାସୀ ଯୁବତୀକୁ କିଛି ଦଳିତ ଯୁବକ ଆକ୍ରମଣ ଘଟଣାର ପ୍ରତିକ୍ରିୟାରେ ଗଲା ଅକ୍ଟୋବର ୬, ୨୦୧୦ରେ ସମଗ୍ର ଦଳିତପଡ଼ାକୁ ଆଦିବାସୀଙ୍କ ଦ୍ୱାରା ଜାଳି ଦିଆଗଲା । ସେହିପରି ଗଲା ପଞ୍ଚାୟତ ନିର୍ବାଚନରେ (ଫେବୃଆରୀ ୨୦୧୨) ନିର୍ଦ୍ଦିଷ୍ଟ ପ୍ରାର୍ଥୀକୁ ଭୋଟ ଦେଇ ନଥିବା ହେତୁ ଢେଙ୍କାନାଳ ଜିଲ୍ଲାର କାମଧେନୁକୁଟ ଗାଁରେ ୨୨ଟି ଦଳିତ ଘରକୁ ଜାଳି ଦିଆଗଲା । ଏହା ସହିତ ସାର୍ଟ କିଣା ଘଟଣାକୁ ନେଇ ଜାନୁଆରୀ ୨୨, ୨୦୧୨ରେ ଉଚ୍ଚଜାତିର ଲୋକେ ଲାଠୋରର ଗଣାପଡ଼ା ଜାଳିଦେଲେ । ସେହିପରି ଏପ୍ରିଲ ୯, ୨୦୧୨ରେ ରାୟଗଡ଼ା ଜିଲ୍ଲାର କଳାହାଣ୍ଡି ପଡ଼ାରେ ଜଣେ ଦଳିତ ଯୁବକ ଜନୈକ ଆଦିବାସୀ ଯୁବତୀକୁ କମେଣ୍ଟ ମାରିବା ଘଟଣାରୁ ସମଗ୍ର ଦଳିତ ପଡ଼ାକୁ ସମଦଶା ଭୋଗିବାକୁ ପଡ଼ିଥିଲା ।

ଘଟଣା ଯାହାବି ହେଇଥାଉ ନା କାହିଁକି ଅଥବା ଯାହାଦ୍ୱାରା ବି ହେଉଥାଉ ନା କାହିଁକି ନିଷ୍ଠୁର ସତ୍ୟଟି ହେଲା ବର୍ଷ ବର୍ଷର ଶ୍ରମ ଦ୍ୱାରା ତିଆରି ହେଇଥିବା ଦଳିତ ପଡ଼ାର ସମଗ୍ର ଘରକୁ ଜାଳି ଦିଆଗଲା । ଅବଶ୍ୟ ଓଡ଼ିଶାରେ ଦଳିତମାନଙ୍କ ଉପରେ ଅତ୍ୟାଚର ଆଗରୁ ହେଉନଥିଲା ନୁହେଁ । ମାତ୍ର ଦଳିତପଡ଼ାର ସମଗ୍ର ଘରକୁ ଜାଳିଦେବାର ଏକ ନୂତନ ଅମାନବୀୟ ପରମ୍ପରା ଭାବରେ ଓଡ଼ିଶାରେ ଜନ୍ମ ନେଇସାରିଛି । ଏହି ଘଟଣାକୁ ପୁଙ୍ଖାନୁପୁଙ୍ଖ ଭାବରେ ଜାଣିବା ପାଇଁ ଓ ମିଡ଼ିଆର ଆଢୁଆଳରେ ରହିଯାଉଥିବା ଘଟଣାକୁ ଖୋଜି ବାହାର କରିବା ପାଇଁ ଆମେ ଏପ୍ରିଲ ୬ ଓ ୭ ୨୦୧୨ରେ ଲାଠୋର ଗାଁକୁ ଯାଇଥିଲୁ । ସେଠାରେ ଆମେ ବିଭିନ୍ନ ବର୍ଗ ତଥା ସଂପ୍ରଦାୟର ଗ୍ରାମବାସୀ, ସ୍ଥାନୀୟ ସାମ୍ବାଦିକ, ସ୍ଥାନୀୟ ଫାଣ୍ଡିର ପୋଲିସ ଅଧିକାରୀଙ୍କୁ ଭେଟିଲା ପରେ ଏହି ବିବାଦର ଚିତ୍ର ଆହୁରି ସ୍ପଷ୍ଟ ହେବାକୁ ଲାଗିଲା, ଯାହା ଆମେ ଅନ୍ୟମାନଙ୍କ ସହିତ ବାଣ୍ଟିବା ପାଇଁ ଚାହୁଁଛୁ । ଲାଠୋର ଦଳିତପଡ଼ାକୁ ନିଜ ଗ୍ରାମବାସୀଙ୍କ ଦ୍ୱାରା ଜାଳିଦେବାର ଦୁଃଖଦ ଘଟଣା ପଛରେ ଥିବା ଘଟଣାବହୁଳ ବିବାଦ ଓ ସାମାଜିକ ବିସମତାକୁ ଆମେ ଆମର ବିଶ୍ଳେଷଣରେ ସ୍ଥାନ ଦେଇଛୁ ।

## ୧.୧ ଲାଠୋରର ଘଟଣା

ଜାନୁଆରୀ ୨୨, ୨୦୧୨ ର ସକାଳ ୯ ଟା ବେଳର ଘଟଣା । ଗଣେଷ ସୁନା ( ବୟସ:୧୫) ଦଳିତ ଯୁବକ ଜଣକ ଲାଠୋର ବଜାରରେ ଅବସ୍ଥିତ ଲକ୍ଷ୍ମୀ

ଷ୍ଟୋରକୁ ସାର୍ଟ କିଣିବା ପାଇଁ ଯାଇଥିଲେ । ଲକ୍ଷ୍ମୀ ଷ୍ଟୋରର ମାଲିକ ହେଲେ ସେହି ଲାଠୋର ଗାଁର ଭୁଲିଆ ଜାତିର ବୁଦ୍ଧୁ ମେହେର । ମାତ୍ର ତାଙ୍କର ଦୁଇ ପୁଅ ଦୟାସାଗର ମେହେର ଓ ଭାରତ ମେହେର ଦୋକାନ ବୁଝାଶୁଝା କରୁଥିଲେ । ଗଣେଷ ସେଠାରେ ଗୋଟେ ସାର୍ଟ କିଣି, ଉଚିତ ଅର୍ଥ ଦେଇ ଚାଲି ଆସିଥିଲେ । ମାତ୍ର ଘରର ଅନ୍ୟ ସଦସ୍ୟମାନେ ସାର୍ଟକୁ ପସନ୍ଦ କଲେ ନାହିଁ । ଗଣେଷ ଦୋକାନକୁ ଯାଇ ତାକୁ ଫେରାଇବାକୁ ଚାହିଁଲେ । ଦୟାସାଗର ସେହିଟିକୁ ଫେରସ୍ତ ନେବାକୁ ମନା କରିବା ସହିତ ସେ ଦୋକାନର ଆଉ ଏକ ସାର୍ଟ ଚୋରୀ କରିଥିବାର ଦୋଷାରୋପ କଲେ । ଗଣେଷ ଏହାକୁ ବିରୋଧ କରିବା ହେତୁ ଉଭୟଙ୍କ ମଧ୍ୟରେ ମୁଥ ମରାମରି ହେଲା ଓ ଗଣେଷ ଫେରିଆସି ନିଜର ପଡ଼ାର ଅନ୍ୟ ଯୁବକମାନଙ୍କୁ ଘଟଣା ସଂପର୍କରେ ଜଣାଇଲେ । ସେମାନେ ଗଣେଷକୁ ସ୍ଥାନୀୟ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର (ପି.ଏଚ୍.ସି.)କୁ ନେଲାବେଳେ ସେଠାର ଦୟାସାଗର ସହିତ ସମସ୍ତଙ୍କର ଭେଟ ହୋଇଗଲା । ସେହି ଦଳିଦ ଯୁବକମାନେ ଦୟାସାଗରକୁ ସେହିଠାର ଧୁମ୍ ପିଟିଦେଲେ । ଏହାପରେ ଦୟାସାଗରଙ୍କୁ ତାଙ୍କ ପରିବାର ଲୋକେ ପାଟଣାଗଡ଼ ଡ଼ାକ୍ତରଖାନା, ସେଠାରୁ ବଲାଙ୍ଗିର ଜିଲ୍ଲା ମୁଖ୍ୟ ଚିକିତ୍ସାଳୟ ଓ ପରେ କଟକ ନେଇଗଲେ । ଗଣେଷ ସୁନା ସହିତ ଦଳିତ ଯୁବକମାନେ ଲାଠୋର ଫାଣ୍ଡିକୁ ଗଲେ । ଫାଣ୍ଡି ଅଧିକାରୀ ସେତେବେଳେ ଖପ୍ରାଖୋଲରେ ଥିବା ହେତୁ ସେମାନେ ଖପ୍ରାଖୋଲ ଗଲେ । ଦଳିତପଡ଼ାର ଅଧିକାଂଶ ପୁରୁଷ ସଦସ୍ୟ ସେହି ଦିନ କେହି ଜଣେ ସମ୍ପର୍କୀୟ ମରିଯାଇଥିବା ହେତୁ ଶୁଦ୍ଧକ୍ରିୟାରେ ଆଉ ଏକ ଗାଁକୁ ଯାଇଥିଲେ । ଗାଁରେ ସେମାନେ ନଥିଲେ ।

ସକାଳ ୧୦ ଟାରୁ ଅପରାହ୍ନ ଚାରିଟା ପର୍ଯ୍ୟନ୍ତ ପ୍ରକୃତରେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ସମୟ ଥିଲା । ଏହି ସମୟ ଭିତରେ ଘଟିଥିବା ଛୋଟ ବଡ଼ ଘଟଣା ଗୁଡ଼ିକ ଏବେ ବି ଅସ୍ପଷ୍ଟ । ମାତ୍ର ଏକଥା ସ୍ପଷ୍ଟ ଯେ ଉଭୟ ଗଣେଷ ସୁନା ଓ ଦୟାସାଗର ମେହେରର ପରିବାରବର୍ଗ ସେହି ସମୟ ମଧ୍ୟରେ ଗାଁରେ ନଥିଲେ । ସେମାନେ ହୁଏତ ପୋଲିସ ଥାନାରେ ଅଥବା ଡ଼ାକ୍ତରଖାନାରେ ବ୍ୟସ୍ତ ଥିଲେ । ପ୍ରାୟ ଗ୍ରାମବାସୀ ବିଶେଷ କରି ଆମେ ଭେଟିଥିବା ଅଣଦଳିତ ପରିବାର, ଘଟଣା ସଂପର୍କରେ ଖୋଲାଖୋଲି ଆଲୋଚନା ପାଇଁ ଅନିଚ୍ଛୁକ । ମାତ୍ର ଏକଥା ସତ୍ୟ ଯେ, ଦୟାସାଗରକୁ ମାଡ଼ ଦେବା ଘଟଣା ଯେତେବେଳେ ଗାଁରେ ପ୍ରଚାରିତ ହୋଇଗଲା ସେତେବେଳେ ଏ ବିବାଦ ଆଉ କେବଳ ଦୁଇଟି ପରିବାର ମଧ୍ୟରେ ସୀମିତ ହୋଇ ରହିନଥିଲା । ଏହା ତୁରନ୍ତ ଜାତିଭିତ୍ତିକ ଗୋଷ୍ଠୀ ବିବାଦର ରୂପ ନେଇଗଲା । କେତେକ ମେହେର/ଭୁଲିଆ ଗୋଷ୍ଠିର ଦୋକାନି

'ତ ବଜାରରେ ଦୋକାନ ବନ୍ଦ ମଧ୍ୟ କରିଦେଲେ । (୧) ସେମାନଙ୍କ ମଧ୍ୟରୁ ଜଣେ ସଦସ୍ୟ ଆମର ଟିମ୍‌କୁ ଜଣାଇଥିଲେ ଯେ ଏହାପରେ ହନୁମାନ ମନ୍ଦିରରେ ତୁରନ୍ତ ଏକ ମିଟିଂ ହୋଇଥିଲା ଓ ଦଳିତଙ୍କୁ ଏକ ଶିକ୍ଷା ଦେବାପାଇଁ ସେଠାରେ ନିଷ୍ପତ୍ତି ନିଆଯାଇଥିଲା । କ୍ଷତିଗ୍ରସ୍ତ ପରିବାରମାନେ ଏକଥା ମଧ୍ୟ ଆମକୁ କହିଲେ ଯେ ଦେଶୀମଦ ବେପାରୀ ଘାସିରାମ୍ ଅଗ୍ରୱାଲ ଓ ପେଟ୍ରୋଲ ପମ୍ପ ମାଲିକ ଜଗନ୍ନାଥ ଅଗ୍ରୱାଲ ବିନା ଅର୍ଥରେ ମଦ ଓ ପେଟ୍ରୋଲ ଯୋଗାଇଥିଲେ ଯାହା ଘର ସବୁକୁ ଜାଳିବା ଲାଗି ଥିଲା ମୁଖ୍ୟ ସାଧନ । ଜିଲ୍ଲା ପ୍ରଶାସନ ପରେ ୩୮ ୨ ଲିଟର ପେଟ୍ରୋଲର କୌଣସି ହିସାବ ନଥିବା ଜାଣିବାକୁ ପାଇଥିଲା । (୨) ଯେତେବେଳେ ଉଚ୍ଚଜାତି ଦ୍ୱାରା ପ୍ରସ୍ତୁତି ଚାଲିଥିଲା ସେତେବେଳେ ଏକ ଗୁଜବ ପ୍ରଚାରିତ ହୋଇଗଲା ଯେ ଦୟାସାଗରର ଆଘାତ ଗୁରୁତର ଅଟେ ଓ ସେ ହୁଏତ ମରିଯାଇପାରେ । ସର୍ବଦା ଏହି ଗୁଜବ ହିଁ ପରିସ୍ଥିତିକୁ ସାଂଘାତିକ କରିଦିଏ ଓ ଏଥରକ ଏହା ଗଣାମାନଙ୍କ ପାଇଁ ଘାତକ ସିଦ୍ଧ ହୋଇଥିଲା ।

ଦଳିତ ପରିବାରଙ୍କ ଉପରେ ଯେ ଆକ୍ରମଣ ପାଇଁ କିଛିଟା ପୂର୍ବରୁ ଯୋଜନା ଚାଲିଥିଲା ଓ ସେଥିପାଇଁ ଲୋକଙ୍କୁ ଏକାଠି କରାଯାଉଥିଲା ଏକଥା ଥାନା ଅଧିକାରୀ ଶ୍ରୀଯୁକ୍ତ କିରୋଙ୍କ ସାକ୍ଷାତକାରରୁ ଆଭାସ ମିଳେ । (୩) ସେ ଦିନ ୧୧ ଟା ସମୟରେ ଗଣେଷ ସୁନା ଠାରୁ ଏଫ.ଆଇ.ଆର୍. ଗ୍ରହଣ ପରେ ତାକୁ ସେ ଡ଼ାକ୍ତରଖାନା ପଠାଇଦେଲେ ଓ ଲବ ସୁନା, ଜିତେନ୍ଦ୍ର ସୁନା ଓ ଗୌରାଙ୍ଗ ସୁନାଙ୍କ ବକ୍ତବ୍ୟକୁ ଲିପିବଦ୍ଧ କରିନେଲେ । ପ୍ରାୟ ଦିନ ଦୁଇଟା ବେଳକୁ ସେ ଲାଠୋର୍‌ରେ ଘଟଣାର ଅନୁସନ୍ଧାନ ପାଇଁ ପହଞ୍ଚିଗଲେ । ସେତେବେଳକୁ ଲୋକେ ରାସ୍ତା ଉପରେ ଗୁଣ୍ଡ ହେଉଥାନ୍ତି ଓ ରାସ୍ତା ଅବରୋଧ ତଥା ଦଳିତଙ୍କ ଘର ପୋଡ଼ିବା ସଂପର୍କରେ ଆଲୋଚନା କରୁଥାନ୍ତି । ସେ ଲୋକଙ୍କୁ ସେପରି ନ କରିବା ପାଇଁ ଚେତାବନୀ ଦେଇ ନିଜର ଖପ୍ରାଖୋଲ ଥାନାକୁ ଦିନ ଘ.୩.୩୦ ରୁ ଘ. ୩..୪୫ ମଧ୍ୟରେ ଚାଲି ଆସିଲେ । ଏକ 'ମାଓବାଦୀ ଏନକାଉଣ୍ଟର ଉଦ୍ଧାର ଅପରେସନ୍' ରେ ତୁରନ୍ତ ଆସିବା ପାଇଁ 'ଉପରୁ' ଫୋନ୍ ଆସିଲା ବୋଲି ସେ ନିଜେ ଆମର ସଦସ୍ୟଙ୍କୁ କହିଛନ୍ତି । ଶ୍ରୀଯୁକ୍ତ କିରୋଙ୍କ ସମେତ ଦଳିତ ପରିବାର ମାନେ ବଲାଙ୍ଗିର ଜିଲ୍ଲା ପୋଲିସ ଅଧିକାରୀଙ୍କୁ ଲାଠୋର୍ (ତତ୍‌କାଳୀନ ପୋସିଲ ଏସ୍.ପି. ଶ୍ରୀଯୁକ୍ତ ଏମ୍. ପ୍ରକାଶ) ଘଟଣା ସମ୍ପର୍କରେ ଜଣାଇବା ସହିତ ବାରମ୍ବାର ସାହାଯ୍ୟ ମାଗିଥିଲେ । ଏପରିକି 'ଧରିତ୍ରୀ' ଖବରକାଗଜର ସ୍ଥାନୀୟ ପ୍ରତିନିଧି ମଧ୍ୟ ଜିଲ୍ଲା ଏସ୍.ପି.ଙ୍କୁ ଘଟଣା ସମ୍ପର୍କରେ ସୂଚନା ଦେବା ସହିତ ତୁରନ୍ତ ଫୋର୍ସ ପଠାଇବା ପାଇଁ ଅନୁରୋଧ କରିଥିଲେ । କିନ୍ତୁ ପୋଲିସ୍ ଫୋର୍ସ ଠିକ୍ ସମୟରେ ଲାଠୋରରେ ପହଞ୍ଚିନଥିଲା, ସମ୍ଭବତଃ ଏହା ପହଞ୍ଚିବାର ବି ନଥିଲା ।

ଶେଷରେ, ଦିନ ଘରିଟାରେ ଘର ଜାଳିବା ଆରମ୍ଭ ହେଲା । ଭୟରେ ଦଳିତ ପରିବାରର ଲୋକେ ଘର ଛାଡ଼ି ଚାଲିଗଲେ । କେହିକେହିପାଖ ଅନ୍ୟ ଦଳିତ ପରିବାରରେ ଆଶ୍ରୟ ନେଲେ ଓ ଆଉ କେତେକ ଜଙ୍ଗଲକୁ ଚାଲିଗଲେ । ସେମାନଙ୍କ ମଧ୍ୟରୁ ଜଣେ ମହିଳା କୁହନ୍ତି 'ମୁଁ ଘରେ ଏକୁଟିଆ ଥିଲି । ସେମାନେ ମୋତେ ଜୋର୍‌ରେ ଧରିନେଲେ ଓ ଘରକୁ ପୁରା ଲୁଟି ନେଲେ..... । ସେମାନେ ଅଶ୍ରାବ୍ୟ ଭାଷାରେ ଗାଳି କରୁଥାନ୍ତି । ସେମାନେ ସମସ୍ତେ ମୋତେ ମାଡ଼ି ବସିଥାନ୍ତି । ସେମାନେ ଅଭଦ୍ର ଭାଷାରେ ଗାଳି କରିବା ସହ ଇଜ୍ଜତ ଲୁଟି ନେବାର ବାରମ୍ବାର ଧମକାଉଥିବା କଥା ଆଉ କିଛି ମହିଳା ବଡ଼ କ୍ଷୋଭର ସହ ଆମ ଟିମ୍‌କୁ କହିଥିଲେ । ଆକ୍ରମଣକାରୀ ମାନେ ନିଶାଗ୍ରସ୍ତଥିବା କଥାବି ସେମାନେ କହୁଥିଲେ ।

ଅପରାହ୍ନ ପ୍ରାୟ ପାଞ୍ଚଟା ବେଳକୁ ଜଣେ ପୋଲିସ୍ ଅଧିକାରୀ ପାଞ୍ଚଜଣ ପୋଲିସ କନଷ୍ଟେବଲ ସହିତ ପାଟଣାଗଡ଼ରୁ ଆସି ପହଞ୍ଚିଲେ । ସେହି ପୋଲିସ ଅଧିକାରୀଙ୍କ ତରଫରୁ ଦିଆଯାଇଥିବା ଏଫ୍.ଆଇ.ଆର୍.ରୁ ଜଣାପଡ଼େ ଯେ, 'ପ୍ରାୟ ୫୦୦ ଲୋକ ମାରଣାସ୍ତ୍ର ଲାଠି ଓ ଟାଙ୍ଗିଆ ଧରି ଘଟଣା ସ୍ଥଳରେ ଏକାଠି ହୋଇଥିଲେ । ଗଣ୍ଡଗୋଳକାରୀମାନେ "ରାସ୍ତାରେ ଟାୟାର୍ ଜାଳି ରାସ୍ତା ଅବରୋଧ କରିଥିବା ହେତୁ ଆମେମାନେ ଉପାୟଶୂନ୍ୟ ହୋଇ ପଡ଼ିଲୁ ।" ସେତେବେଳକୁ ଘରସବୁ ଜଳିବା ଆରମ୍ଭ ହୋଇଯାଇଥାଏ । ଫାୟାର୍ ବ୍ରିଗେଡ଼ ପ୍ରାୟ ସେହି ସମୟରେ ଘଟଣା ନିକଟରେ ପହଞ୍ଚିଥିଲା । ଗଣ୍ଡଗୋଳକାରୀମାନେ ଦମକଳ ବାହିନୀ ଉପରକୁ ପଥର ମାରିବା ସହିତ ଗାଡ଼ିକୁ ମଧ୍ୟ ପୋଡ଼ି ଦେଲେ । ତାପରେ ସେମାନେ ଫେରିଗଲେ ।

ପ୍ରାୟ ରାତି ୧୧ ଟା ବେଳକୁ ବଲାଙ୍ଗିରରୁ ଚାରି ପ୍ଲାଟୁନ ପୋଲିସ ଫୋର୍ସ ଘଟଣା ସ୍ଥଳରେ ପହଞ୍ଚିଥିଲେ ଓ ଗଣ୍ଡଗୋଳକାରୀଙ୍କୁ ଘଉଡ଼ାଇବା ଆରମ୍ଭ କଲେ । ଅର୍ଥାତ୍ ସେମାନେ ରାତି ୯ ଟା ବେଳକୁ ବଲାଙ୍ଗିର ସହର ଛାଡ଼ି ଥିବେ । ପୂର୍ବରୁ ପ୍ରଚାର କରାଯାଇଥିଲା ଯେ ମାଓବାଦୀ ହମ୍‌ଲା ପାଇଁ ପୋଲିସ ପହଞ୍ଚିବା ଡ଼େରି ହେଲ ।। ତାହା ମିଥ୍ୟା । ଲାଠୋର ଫାଣ୍ଡି ଅଧିକାରୀ ରବି ନାରାୟଣ ଆଇଚଙ୍କ ଠାରୁ ଜାଣିଲୁ ଯେ, ମାଓବାଦୀ ବିରୋଧି ଅପରେସନ୍ ପାଇଁ 'ଅଲଗା ଫୋର୍ସ' (ଅର୍ଦ୍ଧସାମରିକ ବାହିନୀ) ନିଯୁକ୍ତ ଅଛନ୍ତି । ସେଦିନ ଲାଠୋର ଠାରେ ରାଜ୍ୟ ସଶସ୍ତ୍ର ବାହିନୀ (ଓ.ଏସ୍.ଏ.ପି.) ଜବାନ ମାନେ ପହଞ୍ଚିଲା ପରେ ସେହି ମଧ୍ୟରାତ୍ରରେ ସେମାନେ ଦଳିତ ପରିବାରମାନଙ୍କୁ ଏକାଠି କରି ପ୍ରଥମେ ପୋଲିସ ଫାଣ୍ଡି ନିକଟକୁ ଓ ପରେ ଜାନୁଆରୀ ୨୩ ତାରିଖ ଦିନ ନିକଟସ୍ଥ ଦୁର୍ଗେଶ୍ୱରୀ ହାଇସ୍କୁଲକୁ ପଠାଇ ଦେଲେ ।

'ସେଠାରେ ଅସ୍ଥାୟୀ ଭାବରେ ରିଲିଫ୍ କ୍ୟାମ୍ପ ସେହି ଜାନୁଆରୀ ୨୩ ତାରିଖରୁ ଆରମ୍ଭ ହେଲା । ଇତଃସ୍ତତଃ ହୋଇଯାଇଥିବା ଲୋକେ ପୁଣି ଧିରେ ଧିରେ ରିଲିଫ୍ କ୍ୟାମ୍ପକୁ ଆସିବାରେ ଲାଗିଥିଲେ ।

ଗଣ୍ଡା ପରିବାରଙ୍କ ଅତି ନିକଟରେ ଅବସ୍ଥିତ ସାତୋଟି ବର୍ତ୍ତିଆ ପରିବାର ଓ ଦୁଇଟି ଘାସି ପରିବାର କିନ୍ତୁ ଏପରି ଆକ୍ରମଣରୁ ବର୍ତ୍ତି ଯାଇଥିଲେ । । ସେଥି ମଧ୍ୟରୁ ଜଣେ ବର୍ତ୍ତିଆ ପରିବାର ନିଜର ନାମ ପ୍ରକାଶ ନକରି କହିଲେ ଆମେ ମାନେ ମଧ୍ୟ ଡ଼ରରେ ଘର ଛାଡ଼ି ପଳେଇଥିଲୁ । ଆମେ ଭାବିଲୁ ସେମାନେ ଆମକୁ ମଧ୍ୟ ଆକ୍ରମଣ କରିବେ । କାରଣ ଆମେମାନେ ମଧ୍ୟ ଦଳିତ । ଆମର ପିଲାମାନେ କ୍ରିଷ୍ଟା କ୍ଲବ୍‌ର କାର୍ଯ୍ୟକ୍ରମରେ ଯୋଗ ଦିଅନ୍ତି । ଘାସି ପରିବାରର ଲୋକମାନେ ମଧ୍ୟ ସମାନ ଅନୁଭୁତି ଜଣାଇଥିଲେ । ଅବଶ୍ୟ ଏହି ଘାସି ପରିବାରର ଲୋକେ କୁଆଡ଼େ ପଳି ନଯାଇ ଘର ଭିତରେ ଲୁଚି ରହିଥିଲେ ।

ଆମେ ଭେଟିଥିବା ମେହେର ଓ ମାରୱାଡ଼ି ପରିବାରର ଲୋକେ ଏପରି କାହାର ଘର ଜାଳି ଦେବା ଅନୁଚିତ ବୋଲି ଆମ ଆଗରେ ସ୍ୱୀକାର କରୁଥିଲେ । ଏହା ସହିତ ସେମାନେ ଭଗବାନ ଶେଷରେ ନ୍ୟାୟ ଦେଲେ ବୋଲି ମଧ୍ୟ ପ୍ରକାଶ କରୁଥାନ୍ତି । ଏହାର କିଛି ଦିନ ଆଗରୁ ଗାଁର ଆରାଧ୍ୟ ଦେବୀ, ବସ୍ତରେନ ଦେବୀ, ନିଜର ପୂଜକଙ୍କୁ ସ୍ୱପ୍ନରେ ଆସି କହିଥିଲେ ଯେ ଯେହେତୁ ଗାଁର ଲୋକେ ଏବେ ଆଉ ନୀତି ନିୟମ ମାନୁ ନାହାନ୍ତି ତେଣୁ ସମଗ୍ର ଗାଁ ଜଳିପୋଡ଼ି ଧ୍ୱଂସ ହୋଇଯିବ । ସେହି ଉଚ୍ଚ ଜାତିର ଲୋକଙ୍କର କହିବାର ହେଲା, ଯେହେତୁ ଦଳିତ ପରିବାରର ଲୋକେ ସାମାଜିକ ନିୟମ କାନୁନ୍‌କୁ ଭାଙ୍ଗିବାକୁ ଚେଷ୍ଟା କରୁଥିଲେ ତେଣୁ ସେମାନଙ୍କୁ ଏକଥା ଭୋଗିବାକୁ ପଡ଼ିଲା । ଏପରି ବର୍ଣ୍ଣନା ପଛରେ ଥିବା ଅନ୍ତର୍ନିହିତ କାରଣ ଗୁଡ଼ିକୁ ଜାଣିବା ଆଗରୁ ଆସନ୍ତୁ ଗାଁ ଆଡ଼େ ବୁଲି ଆସିବା ।

## ୧.୨. ଲାଠୋର ସମ୍ପର୍କରେ

ବଲାଙ୍ଗିର ଜିଲ୍ଲାର ଖପ୍ରାଖୋଲ ବ୍ଲକ୍‌ରେ ଅବସ୍ଥିତ ଲାଠୋର ଗାଁ ହରିଶଙ୍କର ରୋଡ଼ ଟ୍ରେନ୍ ଷ୍ଟେସନ ନିକଟର ଅବସ୍ଥିତ । ରାୟପୁର – ବିଜୟନଗରମ ରେଲ ଲାଇନ୍ ମଧ୍ୟରେ ଏହି ଷ୍ଟେସନ ପଡ଼େ । ଲାଠୋର ଗାଁ ଖପ୍ରାଖୋଲ ବ୍ଲକ୍ ଠାରୁ ୨୫ କି.ମି. ଓ ବଲାଙ୍ଗିର ଜିଲ୍ଲା ମୁଖ୍ୟାଳୟ ଠାରୁ ୯୦ କି.ମି. ଦୂରରେ ରହିଛି । ରେଳଷ୍ଟେସନ ନିକଟରେ ଅବସ୍ଥିତ ହୋଇଥିବା ହେତୁ ଲାଠୋର ଏକ ପ୍ରମୁଖ ବ୍ୟବସାୟସ୍ଥଳୀ ଭାବରେ

ପରିଚିତ ଥିଲା । ଏବେ ଏହା ପଶ୍ଚିମ ଓଡ଼ିଶାର ଏକ ପ୍ରମୁଖ ଶ୍ରମିକ ଚଲାଣସ୍ଥଳୀ ଭାବରେ ଜଣାଶୁଣା ।

ଗଲା ୭୦-୮୦ ବର୍ଷ ମଧ୍ୟରେ ଲାଠୋର ଗାଁକୁ ସମଗ୍ର ମାରୱାଡ଼ି ପରିବାର ଓ କେତେକ ମେହେର ତଥା ଗଣା ପରିବାର ମଧ୍ୟ ନିଜର ଭାଗ୍ୟ ଓ ଜୀବିକାର ଅନୁସନ୍ଧାନରେ ଆସିଛନ୍ତି । ସେହି ହେତୁ ଆଜି ଲାଠୋର ଗାଁ ଏକ ଗ୍ରାମ ପଞ୍ଚାୟତରେ ପରିଣତ ହୋଇଯାଇଛି । ୧୯୬୧ର ଜନଗଣନା ଅନୁସାରେ ଲାଠୋରର ଜନସଂଖ୍ୟା ଥିଲା ୯୩୭ । ୨୦୦୧ ବେଳକୁ ଏହା ୪୦୬୧ ରେ ପହଞ୍ଚିଛି । ଏବେ ପ୍ରାୟ ୫୦୦୦ ଜନସଂଖ୍ୟା ବିଶିଷ୍ଟ ଏହି ଗାଁରେ ପ୍ରାୟ ୮୦୦ ପରିବାର ରହୁଛନ୍ତି । ଏହି ଗାଁରେ ବହୁ ଜାତି ଓ ଗୋଷ୍ଠିର ଲୋକେ ରହୁଛନ୍ତି । ସଂଖ୍ୟା ଦୃଷ୍ଟିରୁ ଭୁଲିଆ (ଯେଉଁମାନେ କି ମେହେର ଓ ଓବିସି ଭାବରେ ଜଣାଶୁଣା) ପରିବାର ସର୍ବାଧିକ (ପ୍ରାୟ ୨୫୦-୩୦୦ ପରିବାର) ଅଛନ୍ତି । ତା ତଳକୁ ମାରୱାଡ଼ି ପରିବାର (ପ୍ରାୟ ୯୦ ପରିବାର) ଅଛନ୍ତି । ଏମାନଙ୍କ ମଧ୍ୟରୁ ଯେଉଁ ମାରୱାଡ଼ି ପରିବାର ନିଜର ଜମିପଟ୍ଟାରେ ବଣିଆ ଲେଖିଛନ୍ତି ସେମାନେ ଓ.ବି.ସି. ତାଲିକାରେ ଆସିବେ, ବାକି ଜେନେରାଲ ରେ ଯିବେ । କିନ୍ତୁ ଏମାନେ ଗାଁରେ ସବୁଠାରୁ ଧନୀଶ୍ରେଣୀରେ ଗଣାଯାଆନ୍ତି । ଏହା ସହିତ କେଉଟ, ପାଇକ, ଗଣ୍ଡା ପରିବାର ମଧ୍ୟ ଅଛନ୍ତି ଯେଉଁମାନେ କି ଓବିସି ତାଲିକାରେ ଆସୁଛନ୍ତି । ୨୦୦୧ ର ଜନଗଣନା ଅନୁସାରେ ଦଳିତ (ଗଣା, ଘାସି, ବର୍ତ୍ତିଆ) ପରିବାର ପ୍ରାୟ ୧୧.୩% ପ୍ରତିଶତ ଓ ଆଦିବାସୀ (ଗଣ୍ଡା, ଶବର/ସଉରା) ପରିବାର ପ୍ରାୟ ୮.୧% ।

ଗାଁରେ ପ୍ରବେଶ କଲେ ଦେଖାଯାଏ ୮ ରୁ ୧୦ ଫୁଟ୍ ଓସାରିଆ ଏକ ପକ୍କା ରାସ୍ତା ଗାଁର ଏ ମୁଣ୍ଡରୁ ସେମୁଣ୍ଡକୁ ନେଇ ଯାଉଛି । ଘର ଗୁଡ଼ିକ ଏହି ରାସ୍ତାର ଦୁଇ ପାର୍ଶ୍ୱରେ ଅବସ୍ଥିତ । ଜାତି ଅନୁସାରେ ଘର ଗୁଡ଼ିକ ଏକାଠି ନରହିଲେ ମଧ୍ୟ ମେହେର ପଡ଼ା,ଗଣା ପଡ଼ା ଭାବରେ ବିଭିନ୍ନ ସାହି ରହିଛି । ଗାଁ ମଧ୍ୟରେ ବିରାଟ ବିରାଟ ପ୍ରାସାଦ ବେଶ ଆଖିଦୃଶିଆ ଅଟେ ଯେଉଁଠିକି ଅତି ଧନୀ ପରିବାର ରହିଥିବା କଥା ସୂଚନା ଦେଉଛି । ଏହା ସହିତ ଛୋଟ ଛୋଟ କୋଠାଘର, ଟାଇଲ ଘର, କୁଡ଼ିଆ ଘର ମଧ୍ୟ ରହିଛି । ଏହି ସବୁ ପ୍ରାସାଦ ଗୁଡ଼ିକ ଅଧିକାଂଶତଃ ମାରୱାଡ଼ି ପରିବାରର । ଗାଁର ଶେଷ ଆଡ଼କୁ ରେଲଷ୍ଟେସନ ନିକଟରେ ଲାଠୋର ବଜାର ରହିଛି । ଗାଁରେ ସାତୋଟି ସ୍କୁଲ । ଚାରୋଟି ସରକାରୀ ଓ ୩ଟି ପ୍ରାଇଭେଟ ସ୍କୁଲ ଅଛି । ସେଥିମଧ୍ୟରୁ ଗୋଟିଏ ସରସ୍ୱତୀ ଶିଶୁ ମନ୍ଦିର ଓ ଆଉ ଗୋଟିଏ ଇଂରାଜୀ ମିଡ଼ିୟମ ସ୍କୁଲ । ଗାଁରେ ଏକ ପ୍ରାଇଭେଟ

କଲେଜ ମଧ୍ୟ ଅଛି । ଏତଦ୍‌ବ୍ୟତୀତ ଗାଁରେ ଏକ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ଓ ପୋଲିସ ଫାଣ୍ଡି ମଧ୍ୟ ଅଛି ।

ଲାଠୋର ଏକ ବ୍ୟବସାୟିକ କେନ୍ଦ୍ର ହୋଇଥିବା ହେତୁ ବିଭିନ୍ନ ଜାତି/ଗୋଷ୍ଠିର ଲୋକେ ବିଭିନ୍ନ ବ୍ୟବସାୟରେ ସଂପୃକ୍ତ । ସେଥିମଧ୍ୟରୁ ମାରୱାଡ଼ି, ମେହେର ଓ ଗଣାମାନେ ପ୍ରମୁଖ ଅଟନ୍ତି । ମାତ୍ର ଅଧିକାଂଶ ବଡ଼ ବଡ଼ ବ୍ୟବସାୟ ଯଥା ମଦ, ପେଟ୍ରୋଲ, କିରୋସିନି, ଜଙ୍ଗଲଜାତ ତଥା କୃଷିଜାତ ଦ୍ରବ୍ୟର ବ୍ୟବସାୟିକ କର୍ତ୍ତୃତ୍ୱ ମାରୱାଡ଼ି ପରିବାର ହାତରେ ଅଛି । ଅବଶ୍ୟ କେତେକ ମାରୱାଡ଼ି ପରିବାର ତେଜରାତି, ଇଲେକ୍ଟ୍ରୋନିକ୍ସ ସରଞ୍ଜାମ, ବସ୍ତ୍ର ଓ ଔଷଧ ଦୋକାନ ମଧ୍ୟ ଖୋଲିଛନ୍ତି । ଅଧିକାଂଶ ପରିବାର ହାତରେ ଜମି ଅଛି । ସେମାନଙ୍କ ମଧ୍ୟରୁ ଅଳ୍ପ କେତେକ ଶ୍ରମିକ-ଠିକାଦାର ଭାବରେ ଆନ୍ଧ୍ରପ୍ରଦେଶ, ତାମିଲନାଡୁ ଓ କର୍ଣ୍ଣାଟକକୁ ଶ୍ରମିକ ଚଲାଣ ମଧ୍ୟ କରିଥାନ୍ତି ।

ମାରୱାଡ଼ିମାନଙ୍କ ସାମାଜିକ ଜୀବନ ଗାଁର ମନ୍ଦିର ଓ ହିନ୍ଦୁ ଧର୍ମର ସାମୂହିକ ଉତ୍ସବ ମଧ୍ୟରେ ସୀମିତ ଅଟେ । ଏହି ସବୁ କାର୍ଯ୍ୟକ୍ରମରେ ସେମାନେ ଅଧିକ ଧନ ଦାନ କରିଥାନ୍ତି । କିଛି ବର୍ଷ ଆଗରୁ ଗାଁରେ ହନୁମାନ ମନ୍ଦିର ଓ ରାଧାକୃଷ୍ଣ ମନ୍ଦିର ମୂଖ୍ୟତଃ ଏହି ମାରୱାଡ଼ି ପରିବାରର ଦାନ ଅର୍ଥରେ ତିଆରି ହୋଇଛି । ଏହା ବ୍ୟତୀତ ସେମାନେ ଗାଁରେ ଅନ୍ୟ କୌଣସି ସାମୂହିକ କାର୍ଯ୍ୟକ୍ରମରେ ସଂପୃକ୍ତ ହୁଅନ୍ତି ନାହିଁ । ସେମାନେ ବେଶ କିଛି ଦଶନ୍ଧି ହେଲା ଏଠାରେ ରହିଲେଣି ମାତ୍ର ସେମାନେ ଗାଁ ଠାରୁ ସର୍ବଦା ନିଜକୁ ଅଲଗା ରଖିଥାନ୍ତି । ଉଦାହରଣ ସ୍ୱରୂପ, ମାରୱାଡ଼ି ଯୁବା ମଂଚ ଦ୍ୱାରା ତିଆରି ହୋଇଥିବା ଧର୍ମଶାଳା (ଉଗ୍ରସେନ ଭବନ) କେବଳ ମାରୱାଡ଼ି ପରିବାରର ବ୍ୟବହାରରେ ହିଁ ଆସିଥାଏ । ସେମାନେ ଏହାକୁ ଅନ୍ୟ ଗୋଷ୍ଠିର ଲୋକଙ୍କୁ ଭଡ଼ା ସୂତ୍ରରେ ମଧ୍ୟ ଦିଅନ୍ତି ନାହିଁ । ସେମାନେ ଏପରି ନିଜକୁ ଗାଁଠାରୁ ଅଲଗା ରଖୁଥିଲେ ମଧ୍ୟ କେବଳ ମନ୍ଦିର କାର୍ଯ୍ୟକ୍ରମରେ ଗାଁ ଲୋକଙ୍କ ସହିତ ମିଶିଥାନ୍ତି । ଯେଉଁଠିକି ବେଶ କିଛି ମେହେର ପରିବାରର ଲୋକ ସେମାନଙ୍କ ସହିତ ସାମିଲ ହେଇ ଥାନ୍ତି । ସେମାନଙ୍କୁ ଗାଁ ମଧ୍ୟରେ ସେଥିପାଇଁ କେବଳ ଏକ ବ୍ୟବସାୟୀକଙ୍କ ଗୋଷ୍ଠି ଭାବରେ ଦେଖାଯାଏ । ଶିକ୍ଷାଗତ ଭାବରେ ସେମାନେ ଏତେ ପଛୁଆ ନୁହନ୍ତି କିନ୍ତୁ ସେମାନଙ୍କ ଆର୍ଥିକ ସ୍ଥିତିକୁ ଦେଖିଲେ ଉଚ୍ଚତର ଶିକ୍ଷା କମ ।

ମେହେର ଗୋଷ୍ଠି ଗାଁରେ ସର୍ବାଧିକ ଅଟନ୍ତି । କିନ୍ତୁ ଲାଠୋର ଆସିବାବେଳୁ ସେମାନେ ନିଜ କୌଳିକ ବୃତ୍ତି ଲୁଗା ବୁଣା ଛାଡ଼ି ମୁଖ୍ୟତଃ କୃଷି ଓ ବ୍ୟବସାୟ କ୍ଷେତ୍ରରେ ସଂପୃକ୍ତ । ଏବେ ଏବେ ବେଶ କିଛି ପରିବାର ବ୍ୟବସାୟ ତଥା ଯାତ୍ରୀବାହୀ

ଗାଡ଼ି ମାଲିକ ହୋଇଛନ୍ତି । ଏହା ମାରୱାଡ଼ି ବ୍ୟବସାୟୀଙ୍କ ବ୍ୟବସାୟରେ ଆଞ୍ଚ ଆଣିଲା । କ୍ରମଶଃ ସେମାନେ ପରସ୍ପରରେ ଏକ ପ୍ରତିଯୋଗୀ ଭାବରେ ଠିଆ ହୋଇଛନ୍ତି । ସେମାନେ ୨୦୦୮ ମସିହାରେ 'ଓଡ଼ିଆ ବଣିକ ସଂଘ' ତିଆରି କରିବାରୁ ଏକଥା ଅଧିକ ସ୍ପଷ୍ଟ ହେଉଛି । ଏହି ବଣିକ ସଂଘ ସଂପୂର୍ଣ୍ଣ ଭାବରେ ଅଣ-ମାରୱାଡ଼ି ଅନୁଷ୍ଠାନ ଯାହା ମେହେର ଗୋଷ୍ଠିର ସୁରକ୍ଷା ପାଇଁ ତିଆରି ହୋଇଛି । କିନ୍ତୁ ଏକଥା ସତ୍ୟ ଯେ, ଏବେ ବି ୩୦-୪୦ ପ୍ରତିଶତ ମେହେର ଗୋଷ୍ଠିର ଲୋକ ଜମିହୀନ । ସେମାନେ ଏବେ ବି ଦୂରବର୍ତ୍ତି ହାଟକୁ ଯାଇ ବସ୍ତ୍ର, ଚପଲ ଇତ୍ୟାଦି ବ୍ୟବସାୟ କରିଥାନ୍ତି । ଶିକ୍ଷାର ମାତ୍ରା ମଧ୍ୟ ଏହି ଗୋଷ୍ଠି ମଧ୍ୟରେ କମ ହେଲେ ବି ସେମାନେ ଅଶିକ୍ଷିତ ନୁହାନ୍ତି । ମାତ୍ର ଆଦୌ ଆର୍ଥିକ ସ୍ୱଚ୍ଛଳତା ନଥିବା ଦଳିତ ମାନେ ମଧ୍ୟ ଏଠି ଉଚ୍ଚତର ଶିକ୍ଷାକୁ ଗୁରୁତ୍ୱ ଦେଉଛନ୍ତି ।

ଅଧିକାଂଶ ଆଦିବାସୀ ପରିବାର ଜଙ୍ଗଲଜାତ ଦ୍ରବ୍ୟ (ଜାଳେଣି କାଠ, ମହୁଲ, ଶାଳପତ୍ର) ଓ ଦିନମଜୁରୀ ଉପରେ ନିର୍ଭରଶୀଳ । କ୍ଷେତରେ ଧାନକଟା ସରିଗଲେ ଏମାନେ ନିଜର ଜୀବିକା ଖୋଜିବା ପାଇଁ ଭାରତର ବିଭିନ୍ନ ପ୍ରାନ୍ତକୁ ଚାଲିଯାଆନ୍ତି । ଦଳିତଙ୍କ ଭିତରେ ସାତୋଟି ବର୍ତ୍ତିଆ ପରିବାର ଓ ଦୁଇଟି ଘାସି ପରିବାର ମଧ୍ୟ ଅଛନ୍ତି । ଏହି ବର୍ତ୍ତିଆ ମାନେ ଗଣା ପରିବାରର ବାହାଘର ଓ ଶୁଦ୍ଧ ଘରରେ ପୂଜକ ଭାବରେ କାମ କରନ୍ତି ଓ ତାହାରି ଦ୍ୱାରା ସେମାନେ ନିଜେ ପରିବାର ପୋଷନ୍ତି । ଘାସି ପରିବାର ଘୁଷୁରି ପାଳି ନିଜର ଜୀବିକା ଚଳାନ୍ତି ।

ଲାଠୋର ଗାଁ ତଳିପଡ଼ା ରେଲଷ୍ଟେସନ ନିକଟରେ ଅବସ୍ଥିତ ଓ ଏଠାରେ ମୁଖ୍ୟତଃ ଆଦିବାସୀ ଓ ଦଳିତ ପରିବାର ରୁହନ୍ତି । ଏଠାର ନବେପ୍ରତିଶତ ଗ୍ରାମବାସୀ ଦିନ ମଜୁରିଆ ଓ ଅଧିକାଂଶ ବାହାରକୁ ଚାଲିଯାଆନ୍ତି । ସେଥିରୁ କେତେକ ଡ୍ରାଇଭର ତ ଆଉ କେତେକ ଘରୋଇ ଚାକର/ଚାକରାଣୀ ଭାବରେ କାମ କରନ୍ତି । ଦଳିତଙ୍କ ମଧ୍ୟରେ ଗଣାଙ୍କ ସଂଖ୍ୟା ଅଧିକ ଓ ସେମାନେ ପ୍ରାୟ ତିନୋଟି ପଡ଼ାରେ ବାଣ୍ଟି ହୋଇ ରହିଛନ୍ତି । ଅନ୍ୟ ଦୁଇ ପଡ଼ାରେ ରହୁଥିବା ଗଣା ପରିବାର ମୁଖ୍ୟତଃ ଦିନମଜୁରିଆ ହୋଇଥିଲେ ମଧ୍ୟ ଜଳି ଯାଇଥିବା ପଡ଼ାଟି ସେମାନଙ୍କ ସମ୍ପର୍କରେ କିଛିଟା ଭିନ୍ନ କଥା କୁହେ ।

ଏହି ପଡ଼ାରେ ୩୩ ଟି ଘରେ ୪୫ ପରିବାର ରୁହନ୍ତି । ସମଗ୍ର ପଡ଼ାଟି ଗୋଟିଏ ବଂଶର । ପରସ୍ପର ମଧ୍ୟରେ ରକ୍ତ ସମ୍ପର୍କ ରହିଛି । ସେମାନେ ଗାଁ ମଧ୍ୟରେ ଅଧିକ ଶିକ୍ଷିତ ଥିବା କଥା ସମସ୍ତେ ଜାଣନ୍ତି । ସମଗ୍ର ଗାଁରେ ଥିବା ମାତ୍ର ଚାରିଜଣ ପୋଷ୍ଟ

ଗ୍ରାଜୁଏଟ୍‌ଙ୍କ ମଧ୍ୟରୁ ଦୁଇଜଣ ଗଣା ପରିବାରର । ନିଜର ଉଚ୍ଚଶିକ୍ଷା ପାଇଁ ପ୍ରାୟ ୨୨ ଟି ପରିବାର ବିଭିନ୍ନ ସରକାରୀ ଓ ବେସରକାରୀ ଉଦ୍ୟୋଗ ଯଥା ବ୍ୟାଙ୍କ୍, ରେଳ, ଶିକ୍ଷାନୁଷ୍ଠାନ (ସ୍କୁଲ ଓ କଲେଜ) ତଥା ପୋଲିସ ଚାକିରୀ କରି ପାରିଛନ୍ତି । କିଛି ପରିବାର ହାତରେ ୨୦ ଏକରରୁ ଅଧିକ ଜମି ଅଛି । ଏମାନଙ୍କ ମଧ୍ୟରୁ ସାତୋଟି ପରିବାର ଜମିହୀନ । ସେମାନେ ଛୋଟବଡ଼ ବ୍ୟବସାୟ ଯଥା ସାଇକେଲ ମରାମତି, ମୋଟର ଗ୍ୟାରେଜ୍ ଓ ପରିବା ଦୋକାନ କରିଛନ୍ତି । ଜଣେ ଶ୍ରମିକ-ଠିକାଦାର ମଧ୍ୟ ଅଛନ୍ତି ।

ନିକଟ ଅତୀତରେ ପ୍ରତିଷ୍ଠିତ କ୍ରିଷ୍ଟା କ୍ଲବ୍‌ର କାର୍ଯ୍ୟକଳାପ ଏହି ଗଣା ପରିବାରର ସାମାଜିକ ସ୍ଥିତିକୁ ବଦଳାଇ ଦେଲା । ୧୯୯୫ରେ ପ୍ରତିଷ୍ଠିତ ହୋଇଥିବା ପ୍ରଥମେ ଉଭୟ ବୟସ୍କ ଓ ଯୁବବର୍ଗର ଭଜନ କୀର୍ତ୍ତନର ସ୍ଥାନ ଥିଲା ଏହି କ୍ଲବ୍ । ୨୦୦୭ ମସିହା ପରେ ଏହା ଭିନ୍ନ ରୂପ ନେବାକୁ ଆରମ୍ଭ କଲା, ଭଜନ କୀର୍ତ୍ତନ ବଦଳରେ ଗଣାପଡ଼ାର ଯୁବବର୍ଗ ଆମ୍ବେଦକର ଦର୍ଶନ ସଂପର୍କରେ ଆଲୋଚନା ଆରମ୍ଭ କଲେ । ସେହି ଆଲୋଚନା ସେମାନଙ୍କ ମଧ୍ୟରେ ମର୍ଯ୍ୟାଦାପୂର୍ଣ୍ଣ ଜୀବନ ଓ ସମାନତାର ଅଧିକାର ସମ୍ପର୍କରେ ଚେତନା ଆଣିଦେଲା । ଏହାର ସଦସ୍ୟମାନେ ପ୍ରଥମେ ଗାଁର ସାମୂହିକ ଉତ୍ସବରେ ହେଉଥିବା ଆଶାଳୀନ ନୃତ୍ୟ କାର୍ଯ୍ୟକ୍ରମକୁ ବନ୍ଦ କରିଥିଲେ । ଏହା ବଦଳରେ କ୍ଲବ୍‌ର ସଦସ୍ୟଙ୍କ ଉଦ୍ୟମ ହେତୁ ଏକ ଅର୍କେଷ୍ଟ୍ରାର ଆୟୋଜନ ହୋଇଥିଲା ଓ ଟିକେଟ ବିକ୍ରି କରି ଆୟ ମଧ୍ୟ କରାଯାଇଥିଲା । ଏହି ଯୁବକ ମାନଙ୍କ ଉଦ୍ୟମ ହେତୁ ଗାଁରେ ସରକାରୀ ଆମ୍ବୁଲେନ୍ସର ସୁବିଧା ସମସ୍ତଙ୍କୁ ମିଳିପାରିଥିଲା । ଏହି ଯୁବବର୍ଗର କହିବା କଥା ହେଲା ସେମାନେ ସର୍ବଦା ଏକ ଗୋଷ୍ଠି ଭାବରେ କାମ କରୁଥିଲେ । ସର୍ବଦା ସମାଜ ସଂସ୍କାର ପାଇଁ ଉଦ୍ୟମ କରୁଥିଲେ । ସେମାନଙ୍କର ଏହି ଉଦ୍ଦେଶ୍ୟ ତଥା ଲାଠୋର ଗାଁର ବିକାଶ ପାଇଁ କରୁଥିବା ବିଭିନ୍ନ ଉଦ୍ୟମ ଗାଁର ସାମାଜିକ ଓ ସାଂସ୍କୃତିକ ସମ୍ବନ୍ଧଗୁଡ଼ିକୁ ଓଲଟପାଲଟ କରି ଦେଉଥିଲା । ଏହି ଦଳିତ ଯୁବକମାନଙ୍କର ଅଧିକାର ସାବ୍ୟସ୍ତର ଉଦ୍ୟମକୁ ଆଖି ଆଗରେ ରଖି ବିଚାର କଲେ ହିଁ ଜଣେ ଏହି ଦଳିତ-ଅଣଦଳିତ ବିବାଦ ଓ ଦଳିତଙ୍କ ଗୃହପୋଡ଼ି ଘଟଣାର କାରଣ ସଂପର୍କରେ ବୁଝିପାରିବ ।

### ୧.୩ ମର୍ଯ୍ୟଦା ଓ ସମାନତା ବନାମ ଆଧିପତ୍ୟ ଓ ପ୍ରଚଳିତ ବ୍ୟବସ୍ଥା

ଅତୀତରେ ଏପରି କିଛି ଛୋଟ ଛୋଟ ଘଟଣା ଘଟୁଥିଲା ଯାହାକି ଗାଁରେ ଆଧିପତ୍ୟ ରଖିଥିବା ବର୍ଗର ସାମାଜିକ ସ୍ଥିତିକୁ ଦୋହଲାଇ ଦେଉଥିଲା । ଦଳିତ

ଯୁବକମାନେ ସାମାଜିକ ସ୍ଥିତି ଓ ବ୍ୟବସ୍ଥାକୁ ନ ମାନିବା ହେତୁ ଯେଉଁ ଅସନ୍ତୋଷ ଉଚ୍ଚବର୍ଗ ମଧ୍ୟରେ ତିଆରି ହେଉଥିଲା ସେହି କୁହୁଳୁଥିବା ନିଆଁ ପରେ ଜାନୁଆରୀ ୨୨, ୨୦୧୨ ରେ ଦଳିତଙ୍କ ୩୩ ଟି ଘର ଉଜାଡ଼ିବାର କାରଣ ହେଲା । ସେହି ଘଟଣା ଗୁଡ଼ିକ ସମ୍ୟକରେ ଆଲୋଚନା କରିବା ।

୧.୩.୧ ୨୦୦୭ ମସିହାର ଦୁର୍ଗାପୂଜା ସମୟର କଥା । କ୍ରିଷ୍ଣା କ୍ଲବର ଯୁବକମାନଙ୍କ ନେତୃତ୍ୱରେ ସମଗ୍ର ଦଳିତ ପରିବାର ପୂଜା ଯଜ୍ଞରେ ଅଂଶ ଗ୍ରହଣ କରିବେ ବୋଲି ଦାବୀ କଲେ । ଯଦି ତାହା କରିବାକୁ ଦିଆନଯାଏ ତେବେ ସେମାନେ ପୂଜାରେ ବାଜା ବଜେଇବେ ନାହିଁ ବୋଲି ପୂଜା କମିଟୀକୁ ଜଣାଇ ଦେଲେ । ପ୍ରକୃତରେ ଏହି ଗଣା ପରିବାରର ସଦସ୍ୟ ମାନେ ହିଁ ପୂଜା ସମୟରେ ଓ ଅନ୍ୟ ଉତ୍ସବରେ ବାଜା ବଜାଇଥାନ୍ତି । ଅବଶ୍ୟ ଏହି ପଡ଼ାର ଯୁବବର୍ଗ ଏକଥା ମଧ୍ୟ ଘୋଷଣା କରିଦେଲେ ଯେ, ଯଦିଓ ସେମାନଙ୍କ ବାପା ଜେଜେ ବାପା ମାନେ ବାଜା ବଜାଇଛନ୍ତି, ତେବେ ସେମାନେ କିନ୍ତୁ ଆଉ କେବେ ବାଜା ବଜାଇବେ ନାହିଁ । ଗାଁରେ ଥିବା ଉଚ୍ଚ ଜାତିର ଲୋକେ ବିଶେଷ କରି କିଛି ମାରୱାଡ଼ି ଓ ମେହେର ପରିବାରଙ୍କୁ ଦଳିତ ଯୁବକଙ୍କ କଥା ହଜମ ହେଲା ନାହିଁ । ତେଣୁ ସେମାନେ ଗଣା ପରିବାରକୁ ପୂଜା ଯାଗାକୁ ନିମନ୍ତ୍ରଣ କଲେ ନାହିଁ । ଏହା ସହିତ ସେମାନଙ୍କୁ ଧମକ୍ ମଧ୍ୟ ଦିଆଗଲା ଯେ, ଯଦି ସେମାନେ ବାଜା ନ ବଜାଇବେ ତେବେ ତାଙ୍କୁ ଗାଁରୁ ବାହାର କରିଦିଆଯିବ । ଅନ୍ୟ ଗାଁର ଗଣାଙ୍କୁ ବାଜା ବଜାଇବା ପାଇଁ ଡ଼କାଯିବ । ମାତ୍ର ପଡ଼ୋଶୀ ଗାଁର ଗଣା ପରିବାରର ଲୋକେ ଲାଠୋର ଗାଁର ଗଣା ପରିବାରକୁ ସମର୍ଥନ ଜଣାଇ ପୂଜାରେ ବାଜା ବଜାଇବାକୁ ଆସିଲେ ନାହିଁ । ପରେ ଏହି ବିବାଦ ପାଟଣାଗଡ଼ର ଉପଜିଲ୍ଲାପାଳଙ୍କ ପର୍ଯ୍ୟନ୍ତ ଯାଇଥିଲା ।

ସେହି ଘଟଣାକୁ କେତେକ ଦଳିତ ଯୁବକ ଭିନ୍ନ ଦୃଷ୍ଟିରେ ବିଶ୍ଳେଷଣ କରନ୍ତି । ସେମାନେ ଭାବନ୍ତି ଯେ ସେମାନଙ୍କୁ ମିଥ୍ୟା ଆଶ୍ୱାସନା ଦେଇ ବୁଝାମଣା କରିଦିଆଗଲା ନ ହେଲେ ତାହା ଜାତିଗତ ଭେଦଭାବ ଓ ତତ୍‌ଜନିତ ବିବାଦର ରୂପ ନେଇଥାନ୍ତା । ସେହି ପୂଜା ପରେ ଉଚ୍ଚଜାତିର ଗ୍ରାମବାସୀ ଲାଠୋର ଫାଣ୍ଡି ଅଧିକାରୀଙ୍କ ଉପସ୍ଥିତିରେ ଗାଁର ଗଣାମାନଙ୍କୁ ବାହାର କରିଦେବାର ନିଷ୍ପତ୍ତି ନେଇଥିଲେ । ଆଗରୁ ନିକଟସ୍ଥ ମହୁଲଘାଟି ଗାଁରେ ସମାନ ଭାବରେ ଗଣାମାନଙ୍କୁ ସେହି ଗାଁର ଉଚ୍ଚଜାତିର ଲେକେ ଲାଠି ଓ ଅନ୍ୟାନ୍ୟ ଅସ୍ତ୍ରଶସ୍ତ୍ର ଧରି ଗାଁରୁ ବାହାର କରିଦେଇଥାନ୍ତି । ଲାଠୋର ଗାଁର ସେପରି ନିଷ୍ପତ୍ତି ଶୁଣି ସେସମୟର ଜିଲ୍ଲାପାଳ ଶ୍ରୀଯୁକ୍ତ ଏସ୍. ଗୋପାଳନ, ସେହି ଉଚ୍ଚ

ଜାତିର ଲୋକଙ୍କୁ ଜନଜାତି ସୁରକ୍ଷା ନିୟମ ବା ପ୍ରିଭେନ୍‌ସନ୍ ଓ ଆଟ୍ରୋସିଟି ଆକ୍ଟରେ ଆରେଷ୍ଟ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ମାତ୍ର ପୋଲିସ ଅଧିକାରୀ ଭାରତୀୟ ପିଙ୍ଗଳ କୋର୍ଡ଼ ବା ଆଇ.ପି.ସି.ର ଧାରା ୧୦୭ (କୌଣସି ଷଡ଼ଯନ୍ତ୍ର ପାଇଁ ଉସକାଇବା) ଦୋଷୀମାନଙ୍କ ବିରୁଦ୍ଧରେ ରୁଜୁ କରିଥିଲେ । ଏହାପରେ ଖପ୍ରାଖୋଲ କଲେଜର ଜଣେ ଅଧାପକ ମିଛରେ ନିଜକୁ ଜିଲ୍ଲାପାଳଙ୍କ ପ୍ରତିନିଧି କହି ଗଣାମାନଙ୍କୁ ପ୍ରବର୍ତ୍ତାଇ ଉଚ୍ଚଜାତି ମଧ୍ୟରେ ଆପୋଷ ମିଳାମିଶା କରେଇ ଦେଇଥିଲେ । ପ୍ରଶାସନ ଓ ପୋଲିସର ଏହି ଜାତିଗତ ବିବାଦକୁ ଦୁଇଗୋଷ୍ଠି ମଧ୍ୟରେ ସାମନ୍ୟ ବିବାଦର ରୂପ ଦେଇ ଉଚ୍ଚଜାତିର ଲୋକେ ଜନଜାତି ସୁରକ୍ଷା ନିୟମ ଜନିତ ଆରେଷ୍ଟରୁ ସେଥର ବର୍ତ୍ତିଯାଇଥିଲେ ବୋଲି ସେହି ଦଳିତ ଯୁବକମାନେ ମନେକରନ୍ତି । ସେମାନେ ଉଚ୍ଚଜାତିର ଚଲାକି ଦ୍ୱାରା ଠିକିଗଲେ ବୋଲି ମନେ କରନ୍ତି ।

ଆମ୍ବେଦକର ଆନ୍ଦୋଳନ ବଢ଼ିବା ସହିତ ମନ୍ଦିର ପ୍ରବେଶକୁ ନେଇ ଦାବୀ ମଧ ଦଳିତ ଯୁବକଙ୍କ ମଧ୍ୟରେ ବଢ଼ିବାରେ ଲାଗିଲା । ୨୦୦୮ ମସିହାରେ ଦଳିତ ଯୁବକମାନଙ୍କ ମଧ୍ୟରେ ଗାଁରେ ହେଉଥିବା ଯଜ୍ଞରେ ଭାଗନେବା ଓ ମନ୍ଦିର ପ୍ରବେଶକୁ ନେଇ ଦାବୀ ତେଜିବା ସହିତ କେତେକ ଯୁବକ ମନ୍ଦିରରେ ପ୍ରବେଶ ପାଇଁ ଉଦ୍ୟମ କଲେ ଓ ସେମାନଙ୍କୁ ପ୍ରବେଶ ପାଇଁ ସୁଯୋଗ ଦିଆଗଲା ନାହିଁ । ଏପରିକି ଏକ ଯଜ୍ଞ ସମୟରେ ଦଳିତଙ୍କ ଭାଗନେବା ଦାବୀ ଉଠିବା ହେତୁ ଯଜ୍ଞର ସ୍ଥାନ ପୂଜା କମିଟୀ ଦ୍ୱାରା ବଦଳାଇ ଦିଆଗଲା ଓ କମିଟୀ ଦ୍ୱାରା ନିଷ୍ପତ୍ତି ନିଆଗଲା ଯେ, କେବଳ ପୂଜକ ହିଁ ଯଜ୍ଞ କରିବେ ଓ ଗାଁର ଅନ୍ୟ କେହି ଏଥିରେ ଭାଗ ନେବେ ନାହିଁ । ଏହା କେବଳ ଦଳିତ ଯୁବକଙ୍କୁ ସେଥିରୁ ନିବୃତ୍ତ ରଖିବା ପାଇଁ କରାଗଲା । ଏକଥା ମଧ ଜାଣି ଜାଣି ପ୍ରଚାର କରିଦିଆଗଲା ଯେ, ଦଳିତ ଯୁବକଙ୍କ ଏପରି ଦାବୀ ହେତୁ ସମଗ୍ର ଯଜ୍ଞସ୍ଥଳ ଅପବିତ୍ର ହୋଇଗଲା । ଏହା ସତ୍ତ୍ୱେ ବେଶ କିଛି ଲୋକ ଆମକୁ କହୁଥିଲେ ଯେ ୧୯୯୭ ରୁ ୨୦୦୮ ମଧ୍ୟରେ ଗାଁରେ ବିରାଟ ପରିବର୍ତ୍ତନ ଘଟିଛି । ୧୯୯୭ ର ଏକ ଘଟଣାରେ ଯଜ୍ଞର ଘିଅ ଜଳା ବେଳେ କେହି ଦଳିତ ଯୁବକ ଯଜ୍ଞ ସ୍ଥଳୀରେ ପ୍ରବେଶ କରିବା ହେତୁ ଯଜ୍ଞସ୍ଥଳ ଅପବିତ୍ର ହୋଇଗଲା ବୋଲି ପୂଜକ ଘୋଷଣା କରି ଯଜ୍ଞକୁ କିଛି ଘଣ୍ଟା ବନ୍ଦ କରିଦେଇଥିଲେ । ପରେ ଦଳିତ ପରିବାରମାନଙ୍କୁ ୨୦ କିଲୋଗ୍ରାମ ଘିଅ ଦଣ୍ଡସ୍ୱରୂପ ଦେବାକୁ ପଡ଼ିଥିଲା । ଆମକୁ ଏ ସମ୍ପର୍କରେ କହୁଥିବା ଦଳିତ ବ୍ୟକ୍ତି ଜଣକ କହିଲେ "ଏମାନେ ନ ବଦଳିଲେ ସମାଜ ବଦଳିବନି" ।

### ୧.୩.୨ ଆଟ୍ରୋସିଟି ଆକ୍ଟରେ ଗାଁର ପୂଜକଙ୍କୁ ଆରେଷ୍ଟ

ଲାଠୋର ଗାଁର ଦଳିତ ଯୁବତୀ କେଦାର ଗୌରୀ ତାଣ୍ଡି । ସବୁଦିନ ପରି ସେଦିନ ସେ ପୂଜା ପାଇଁ ଗାଁର ଶିବ ମନ୍ଦିର ଯାଇଥିଲେ । ତାହା ଥିଲା ମେ ୧୧, ୨୦୦୯ ତାରିଖ । ସେଦିନ ବ୍ରାହ୍ମଣ ପୂଜକ ତାଙ୍କୁ ପୂଜା ପାଇଁ ବାରଣ କରିବା ସହିତ ତାର ପୂଜାଥାଳୀକୁ ଫିଙ୍ଗି ଦେଲେ, ପରେ ସେହି ପୂଜକ ଆରେଷ୍ଟ ହେଲେ । ଗୌରୀ ନିଜେ ଯାହା ଆମ ଟିମ୍‌କୁ କହିଲେ ତାହା ହେଲା ଯେ ଆଗରୁ ଅନେକ ଥର ସେ ମନ୍ଦିର ଯାଇଛନ୍ତି । ମାତ୍ର ସେଦିନ ଜଣେ ନୂଆ ପୂଜକ ବିରଞ୍ଚି ଥାନାପତି ଥିଲେ । ସେ ଗୌରୀଙ୍କୁ ଗାଳି କରିବା ସହିତ ତା'ର ପୂଜାଥାଳୀକୁ ଫିଙ୍ଗିଦେଲେ । ଗଣା ମାନେ ଏଠାକୁ ଆସି ପୂଜା କରିବାକୁ ମନା କରିବା ସହିତ ତାକୁ ମଧ୍ୟ ମନ୍ଦିର ନ ଆସିବା ପାଇଁ ଧମକାଇଥିଲେ । ଗୌରୀଙ୍କୁ ଏହା ବହୁତ ଆଘାତ ଦେଲା । ଲଜ୍ଜା ଓ କ୍ରୋଧରେ ଆଖିକୁ ଲୁହ ଆସିଗଲା । ଏହା ତାଙ୍କ ପ୍ରତି କୌଣସି ବ୍ୟକ୍ତିଗତ ଆକ୍ଷେପ ନଥିଲା ବରଂ ସମଗ୍ର ଗଣା ଜାତି ପ୍ରତି ଉଦ୍ଦିଷ୍ଟ ଥିଲା ସେକଥା ସେ ବୁଝି ପାରିଥିଲେ ।

ପୂଜକର ଏପରି ଜାତିକୁ ନେଇ ତାସ୍ଛଲ୍ୟ ବିରୁଦ୍ଧରେ ଗୌରୀ ଅନୁସୂଚିତ ଜାତି ଓ ଜନଜାତି ସୁରକ୍ଷା ନିୟମ ୧୯୮୯ରେ (Schedule Caste and Scheduled Tribe Prevention of Atrocity Act, 1989) କେସ୍ କଲେ । ଯଦିଓ ଆଗରୁ ସେ କେବେ ପୋଲିସ ଥାନା ଆସିନଥିଲେ ମାତ୍ର ଏଥର ନିଜେ ଏକୁଟିଆ ସାମ୍ନାକୁ ଆସି ନିଜର ଅଭିଯୋଗ ଲେଖିଲେ । ସେହି ପୂଜକ ଜଣକ ଆରେଷ୍ଟ ହୋଇଥିଲେ ।

ଏହା ପରେ କିଛି ଲୋକ, ପ୍ରାୟ ୬/୭ ଜଣ ପୁରୁଣା ପୂଜକଙ୍କ ସହିତ ଆସି ଗୌରୀଙ୍କୁ ମିଳାମିଶା ପାଇଁ କେସ୍ ପ୍ରତ୍ୟାହାର କରିନେବା ପାଇଁ ପ୍ରବର୍ତ୍ତାଇ ଥିଲେ । ସେହି ପୂଜକ ବିରଞ୍ଚି ଥାନାପତି ପାଗଳ ହୋଇଗଲାଣି ବୋଲି କହିବାରୁ ଗୌରୀ ତାର ଜବାବ ଦେଲେ "ଗୋଟେ ପାଗଳ କ'ଣ କେବେ ଜାତିରେ ଭେଦ ରଖିପାରେ କି ? ଯଦି ସେ ମୋତେ ମାରିଦେଇଥାନ୍ତା ତାହେଲେ କଣ କୁହାଯାଇଥାନ୍ତା ଯେ ପାଗଳଟେ ମାରିଦେଲା ?" ପୂଜକ ଜଣକ ଜାମିନ୍‌ରେ ଆସିଲାପରେ ବି ଗୌରୀ ପ୍ରତି ତାଙ୍କର ର୍ଦୁବ୍ୟବହାର ସୁଧୁରିନଥିଲା । ସେ କେସ୍ ଏବେ ବି ଚାଲିଛି ।

### ୧.୩.୩ କ୍ରିଷ୍ଟା କ୍ଲବ୍ ସଦସ୍ୟଙ୍କ ଉଦ୍ୟମ

୨୦୧୦ ରେ ଓଡ଼ିଆ ବଣିକ ସଂଘ ଲାଠୋରରେ ଧନୁଯାତ୍ରା ଆୟୋଜନ କରିଥିଲେ । ପୂର୍ବ ବର୍ଷ ଭଳି ସେଥିରେ ମଧ୍ୟ ଆଶାଳୀନ ନୃତ୍ୟ, ଜୁଆ ଓ ମଦର

ପ୍ରଚଳନ ହେବା ହେତୁ କ୍ରିଷ୍ଣା କ୍ଲବ୍‌ର ସଦସ୍ୟମାନେ ବିରୋଧ କରିଥିଲେ । ସେ ବିରୋଧକୁ ବଣିକ ସଂଘର ସଦସ୍ୟମାନେ ହଜମ କରିପାରିନଥିଲେ ।

ଅଗଷ୍ଟ ୨୦୧୧ରେ ଗାଁରେ ଇଲେକ୍ଟ୍ରି ସମସ୍ୟା ଦେଖାଦେଲା । କ୍ରିଷ୍ଣା କ୍ଲବ୍‌ର ସଦସ୍ୟମାନଙ୍କ ଉଦ୍ୟମ ହେତୁ ଅସୁବିଧା ଦୁର ହୋଇପାରିଲା । ସେତେବେଳେ ପ୍ରାୟ ଦେଢ଼ମାସ ଧରି ଗାଁରେ ଇଲେକ୍ଟ୍ରି ନଥିଲା । ଓଭର ଲୋଡ୍ ହେତୁ ଗାଁର ଟ୍ରାନ୍ସଫର୍ମର୍ ପୋଡ଼ି ଯାଉଥାଏ । କ୍ରିଷ୍ଣା କ୍ଲବ୍‌ର ସଦସ୍ୟମାନେ ଇଲେକ୍ଟ୍ରି ଏସ୍.ଡ଼ି.ଓ.ଙ୍କୁ ଦରଖାସ୍ତ ଦେବା ସହିତ ଇଲେକ୍ଟ୍ରି ବୋର୍ଡ଼ ଦ୍ୱାରା ପ୍ରସ୍ତୁତ ନିୟମକୁ ପାଳନ କରିବା ପାଇଁ ନିଜ ଆଡୁ ଯୁକ୍ତି କରିଥିଲେ । ଯାହା ଫଳରେକି ତିନି ଦିନ ମଧ୍ୟରେ ଗାଁକୁ ଇଲେକ୍ଟ୍ରି ଆସିଗଲା ଓ ସମସ୍ତେ ବହୁତ ଖୁସି ହୋଇଯାଇଥିଲେ । ବିଶେଷ କରି କ୍ରିଷ୍ଣା କ୍ଲବ୍‌ର ସଦସ୍ୟମାନେ ଅଧିକ ଖୁସିଥିଲେ କାରଣ ସେମାନଙ୍କର ଏହା ବିଜୟ ଥିଲା । ପୁଣି ୧୦ ଦିନ ମଧ୍ୟରେ ସେହି ଟ୍ରାନ୍ସଫର୍ମର୍ ପୋଡ଼ିଗଲା ଓ ଏହା ଯେ ଇଲେକ୍ଟ୍ରି ଚୋରୀ ହେତୁ ହେଉଛି ସେକଥା ଜଣାପଡ଼ିଲା । ଇଲେକ୍ଟ୍ରି ବିଭାଗର କର୍ମଚାରୀ ଗାଁର ହିଟର, ୱେଲ୍‌ଡ଼ିଂ ମେସିନ୍ ଓ ଅନ୍ୟାନ୍ୟ ଇଲେକ୍ଟ୍ରି ମିଟରର ଲୁଚଚୋରା ବ୍ୟବହାର ହେତୁ ଏପରି ହେଉଛି ବୋଲି ଅଭିଯୋଗ କଲେ । ଏହା ପରେ ଗାଁରେ ଇଲେକ୍ଟ୍ରି ଚୋରୀ କରୁଥିବା ଲୋକ ଧରା ପଡ଼ିଲେ । ସଂଯୋଗବଶତଃ ସେହି ବ୍ୟକ୍ତିମାନେ ସମସ୍ତେ ଧନୀ ପରିବାରର ଥିଲେ । ଧନୀ ମାରୱାଡ଼ି ପରିବାର ଏଥିରେ ଅଡୁଆ ପରିସ୍ଥିତିରେ ପଡ଼ିଥିଲେ ।

ଏକଥା ସତ ଯେ, ଟ୍ରାନ୍ସଫର୍ମର୍ ସଜାଡ଼ିବା ଓ ଗାଁକୁ ବିଦ୍ୟୁତ ସଂଯୋଗ ପୁନଃ ଆଣିବା ପାଇଁ ଯେଉଁ ଘର ପିଛା ଚାନ୍ଦା ସଂଗ୍ରହ ହୋଇଥିଲା ତାହାର ଖର୍ଚ୍ଚକୁ ନେଇ କ୍ରିଷ୍ଣାକ୍ଲବ୍‌ର ସଦସ୍ୟଙ୍କ ପ୍ରତି ଅନ୍ୟ ଗ୍ରାମବାସୀଙ୍କର କିଛିଟା ସନ୍ଦେହ ରହିଛି (କ୍ଲବ୍‌ର ସଦସ୍ୟମାନେ ଖର୍ଚ୍ଚର ତାଲିକା ଦେବାରେ ବିଳମ୍ବ କରିଛନ୍ତି) । ମାତ୍ର ଏକଥା ମଧ୍ୟ ସତ୍ୟ ଯେ ସେମାନଙ୍କ ଉଦ୍ୟମ ହେତୁ ସ୍ଥାନୀୟ ପ୍ରଶାସନ ଓ ଇଲେକ୍ଟ୍ରି ବୋର୍ଡ଼ର କର୍ମଚାରୀ ବାଧ୍ୟ ହୋଇ ଗାଁକୁ ପୁନଃବିଦ୍ୟୁତ ସଂଯୋଗ ଦେଇଥିଲେ । କ୍ଲବ୍‌ର ସଦସ୍ୟଙ୍କ ପ୍ରଶଂସନୀୟ ଉଦ୍ୟମ ସହିତ ଗାଁର ଧନୀପରିବାରର ବିଦ୍ୟୁତ ଚୋରୀ ବେଶ୍ କିଛି ଦିନ ଧରି ଗାଁରେ ଚର୍ଚ୍ଚାର ବିଷୟ ଥିଲା । ଏହି ଚର୍ଚ୍ଚା କ୍ରମଶଃ ଏକ କାରଣ ମଧ୍ୟ ହୋଇଗଲା ଯେଉଁଥିପାଇଁ କି କ୍ରିଷ୍ଣାକ୍ଲବ୍‌ର ସଦସ୍ୟମାନଙ୍କ ଦ୍ୱାରା ଆଦାୟ ହୋଇଥିବା ଚାନ୍ଦାର ଖର୍ଚ୍ଚ ସଂପର୍କରେ ସେହିମାନଙ୍କ ଦ୍ୱାରା ପ୍ରଶ୍ନ ଉଠାଗଲା । ଖର୍ଚ୍ଚର ପୂର୍ଣ୍ଣ ବିବରଣୀ ପାଇଁ ରତନ ଅଗ୍ରୱାଲଙ୍କ ଦ୍ୱାରା କ୍ଲବ୍‌ର ସଦସ୍ୟମାନଙ୍କୁ ତାଙ୍କ ନିଜ ଘରକୁ ଡ଼କାଗଲା । ମାତ୍ର କ୍ରିଷ୍ଣା କ୍ଲବ୍‌ର ସଦସ୍ୟମାନେ ରତନ ଅଗ୍ରୱାଲ୍‌ଙ୍କ ଘରକୁ ଯାଇନଥିଲେ । ଏହାଦ୍ୱାରା ଉଚ୍ଚଜାତିର

ପକ୍ଷଟି ଯେ କେବଳ ଲଜ୍ଜିତ ହୋଇନଥିଲା, ସେମାନେ କ୍ଲବ୍‌ର ସଦସ୍ୟଙ୍କ ଏପରି ବ୍ୟବହାର ଦେଖି ବ୍ୟଥିତ ହୋଇଥିଲେ । ସେମାନଙ୍କ ମଧ୍ୟରେ ଏକଥା ମଧ୍ୟ ଚର୍ଚ୍ଚା ହୋଇଥିଲା ଯେ ଯଦି ଜନଜାତି ସୁରକ୍ଷା ନିୟମ ବା Prevention of Atrocity Act ନଥାନ୍ତା ତେବେ ସେହିଠାରେ ସେହିଦିନ ହିଁ କଥାର ସମାଧାନ ହୋଇଯାଇଥାନ୍ତା । ଏଥିରୁ ଏକଥା ପ୍ରମାଣିତ ହେଉଛି ଯେ ଏହି ନିୟମଟି ଉଚ୍ଚଜାତିର ଲୋକଙ୍କ ପ୍ରାଧାନ୍ୟ ବିରୁଦ୍ଧରେ ବାଧା ସୃଷ୍ଟି କରୁଛି । ଏହା ସେମାନଙ୍କ ଧର୍ଯ୍ୟଚ୍ୟୁତିର ଅନ୍ୟ ଏକ କାରଣ ମଧ୍ୟ ହୋଇଥିଲା ।

ଜାନୁଆରୀ ୧୭, ୨୦୧୨ ଦିନ 'ସମୟ' ଖବର କାଗଜରେ ଲାଠୋର କଳାବଜାରୀ ସଂପର୍କରେ ଏକ ଖବର ବାହାରିଥିଲା । ଏଥିରେ ମଦ, କାଠ, ଜାଳେଣି ଗ୍ୟାସ୍, ବିଭିନ୍ନ କୃଷିଜାତ ଦ୍ରବ୍ୟର କଳାବଜାରୀ ସମ୍ପର୍କରେ ଲେଖା ଯାଇଥିଲା । ଏଥିରେ ଯଦିଓ ସେହି ଛେରା ବ୍ୟବସାୟୀଙ୍କ ନାମ ନଥିଲା ମାତ୍ର ଲାଠୋରରେ ସମସ୍ତେ ସେହି ଉହ୍ୟ ନାମ ସଂପର୍କରେ ଜାଣିଥିଲେ । ସ୍ଥାନୀୟ 'ସମୟ'ର ପ୍ରତିନିଧି କପିଳ ସୁନା ସେହି ରିପୋର୍ଟ ଲେଖିଥିଲେ ଓ ସେ ନିଜେ ଲାଠୋର ଗଣାପଡ଼ା ବାସିନ୍ଦା । ଏହି ପୋଡ଼ି ସମୟରେ ତାଙ୍କ ଘରକୁ ମଧ୍ୟ ଉଚ୍ଚଜାତିର ଲୋକେ ଜାଳି ଦେଇଥିଲେ ।

ଗାଁ ମଧ୍ୟରେ ଦଳିତ ଯୁବକମାନଙ୍କର ଜାତିଗତ ଭେଦଭାବ ବିରୁଦ୍ଧରେ ଲଢ଼େଇ କରିବା ଓ ଏହାକୁ ସାବ୍ୟସ୍ତ କରିବା ପାଇଁ ଗାଁର ବିଭିନ୍ନ ସମସ୍ୟା/କାର୍ଯ୍ୟକ୍ରମ ସହିତ ଜଡ଼ିତ ହେବା, ଗାଁର ଉଚ୍ଚଜାତିର ଲୋକଙ୍କ ଆଧିପତ୍ୟ ଓ ପ୍ରତିପତ୍ତିକୁ ସିଧାସଳଖ ପ୍ରଶ୍ନ କରୁଥିଲା । ଗାଁରେ ଯେଉଁମାନେ ଏହି ଜାତିଗତ ଭେଦ ରହିବା ଉଚିତ୍ ମନେ କରୁଥିଲେ ସେମାନେ ଅଶ୍ୱସ୍ତି ଅନୁଭବ କରିବା ସହିତ ଏହି ସମାନତା ଦାବୀ କରୁଥିବା ଯୁବକମାନଙ୍କୁ ଉପଯୁକ୍ତ ଶିକ୍ଷା ଦେବାପାଇଁ ସୁଯୋଗ ଅପେକ୍ଷାରେ ଥିଲେ । ଲାଠୋରର ଗଣାମାନଙ୍କ ସମ୍ପୂର୍ଣ୍ଣ ବସ୍ତିକୁ ପୋଡ଼ାଇଦେବା ପଛରେ ଯଦିକିଛି ଅନ୍ତର୍ନିହିତ ଉଦ୍ଦେଶ୍ୟ ଥାଏ ତେବେ ତାହା ହେଉଛି ଯେ ଗଣା ଯୁବକମାନଙ୍କ ଦ୍ୱାରା ଗାଁରେ ସମାନ ମର୍ଯ୍ୟଦାର ଜୀବନ ବଂଚିବା ପାଇଁ ଦାବୀ କରିବା ଓ ସେଥିପାଇଁ ଜାତିଗତ ଭେଦଭାବ ନରଖି ସମାନତାର ରାସ୍ତାରେ ଗାଁର ସାମୂହିକ ସମସ୍ୟାର ସମାଧାନର ଉଦ୍ୟମ କରିବା । ସେହି ଯୁବକମାନେ ପରେ ଆମ୍ବେଦକରଙ୍କ ଏକ ପ୍ରତିମୂର୍ତ୍ତି ସ୍ଥାପନା ପାଇଁ ମଧ୍ୟ କିଛି ଅର୍ଥ ଆଦାୟ କରିଥିଲେ ଯାହାକି ଏହି ବସ୍ତିପୋଡ଼ା ଭିତରେ ଜଳିଗଲା ।

ଏହା ଦେଖିବାର କଥା ଯେ, ଗାଁର ପ୍ରତ୍ୟେକ ଜାତିର ଲୋକ ଗଲା ଚରିପାଞ୍ଚ ବର୍ଷ ମଧ୍ୟରେ ଘଟିଥିବା ଘଟଣା ଆଡ଼କୁ ଆମକୁ ନେଇଯାଉଥିଲେ ଓ ତାହାକୁ 'କୁହୁଳୁଥିବା

ନିଆଁ'ର ରୂପ ଦେଉଥିଲେ । ମାତ୍ର ସମସ୍ତଙ୍କ ବର୍ଣ୍ଣନା ନିଜ ଜାତିର ଆଧାରରେ ହେଉଥିଲା । ଅର୍ଥାତ୍ ନିଜର ପକ୍ଷ ରଖିଲା ବେଳେ ସେମାନେ ନିଜର ଜାତିଗତ ବିଦ୍ୱେଷ (ଉଚ୍ଚଜାତି) ଓ ଜାତିଗତ ସମାନତାର ଅଧିକାର (ଦଳିତବର୍ଗ)ର ଦୃଷ୍ଟିଭଙ୍ଗିରେ ଘଟଣାକୁ ବର୍ଣ୍ଣନା କରୁଥିଲେ । ତେଣୁ ଏପରି କ୍ଷେତ୍ରରେ ଯଦିଓ ଘଟଣା ସମାନ ଥିଲା ମାତ୍ର ଯାହାକୁ ଦଳିତ ବର୍ଗ ସମାନତା କହୁଥିଲେ, ଉଚ୍ଚଜାତିର ଲୋକେ ତାକୁ ସେମାନଙ୍କ ଅମର୍ଯ୍ୟାଦା ହେଲା ବୋଲି ମନେ କରୁଥିଲେ ।

**୧.୩.୪ କ୍ଷୟକ୍ଷତି ସମ୍ପର୍କରେ ସେମାନେ ଯାହା କୁହନ୍ତି -**

କେତେକ ଦଳିତ ମହିଳା ନିଜର ଦୁଃଖଦ ଅନୁଭୂତିକୁ ଆମ୍ଭର ଟିମ୍ ଆଗରେ ବର୍ଣ୍ଣନା କଲେ । ଏହା ଯେ ସେମାନଙ୍କ ପାଇଁ ଏକ ଶକ୍ତ ଧକ୍କା ଥିଲା ଓ ଏଥିରେ ସେମାନେ ନିଜର ସବୁକିଛି ହରାଇଲେ,ସେମାନଂକ ବୟାନରୁ ସେ କଥା ବୁଝାପଡୁଥିଲା । ଏତେ ବର୍ଷର କଠିନ ପରିଶ୍ରମ ଦେଇ କରିଥିବା ଘର ଓ ତା'ର ଆସବାପତ୍ର ଯେଉଁଭଳି ନିମିଷକ ମଧ୍ୟରେ ଜଳିଗଲା । ଏଭଳି ସ୍ଥିତିରେ ପୁଣି ଯେ ସେମାନେ ଆଉଥରେ ଛିଡ଼ା ହୋଇପାରିବେ ସେ ସମାନ୍ୟତମ ଆଶା ଆଉ ତାଙ୍କୁ ଦେଖା ଯାଉନଥିଲା । ଜଣେ ପରିବା ବୁଲା ବିକାଳି ମହିଳା, ବୟସ ପ୍ରାୟ ୫୫ ହେବ, ସେଦିନର ଅନୁଭୂତିକୁ ଏପରି କହୁଥିଲେ – "ଚଉଦ ବର୍ଷ ତଳେ ମୋର ସ୍ୱାମୀ ଯକ୍ଷ୍ମାରେ ମରିଯାଇଥିଲେ । ମୋର ଦୁଇଟି ପୁଅ ଓ ଗୋଟିଏ ଝିଅ ଅଛି । ମାତ୍ର ମୋ ପାଖରେ କୌଣସି ଜମି ନାହିଁ କି ଜୀବିକା ପାଇଁ ଆଉ କିଛି ମାଧ୍ୟମ ନାହିଁ । ମୋର ହାତଗୋଡ଼କୁ ଭରସା କରି ବୁଲା ପରିବା ବିକାଳି ସାଜିଥିଲି । କେବଳ ଛୁଆମାନଙ୍କୁ ଟିକେ ଖାଦ୍ୟ ଦେଇ ବଞ୍ଚେଇବି ବୋଲି ସକାଳୁ ସଂନ୍ଧ୍ୟା ଯାଏ କାମ କରୁଥାଏ । ମୁଁ ମୋର ଅତୀତକୁ କେବେ ଦେଖିବା ପାଇଁ ସାହାସ ମଧ୍ୟ କରିନଥିଲି । ସକାଳ ହେଲେ ଖରିଆର, ମହାସୁମୁନ୍ଦ, ବାଗବରା, ରାୟପୁରରୁ ପରିବା ଆଣି ମୁଁ ଏଠିସେଠି ବିକୁଥିଲି । ପୁଣି ଏପଟୁ ପରିବା ନେଇଁ ସେପଟେ ବିକୁଥିଲି । ସେମିତି ସେମିତି କରି ପୁଅକୁ +୨ ପର୍ଯ୍ୟନ୍ତ ପଢ଼ାଇଲି । ଝିଅକୁ ବାହା ଦେଲି । ମୋର ଜ୍ୱାଇଁକୁ କ୍ୟାନ୍ସର ହେଲା ବୋଲି ସେଥିରେ ବହୁତ ଟଙ୍କା ଖର୍ଚ୍ଚ କଲି । ଶେଷରେ ସେ ବି ବଞ୍ଚିଲା ନାହିଁ ମରିଗଲା । ତାପରଠୁ ଝିଅ ମୋ ପାଖରେ ରହୁଥିଲା । ମାତ୍ର ଆଜି ମୋତେ ଲାଗୁଛି ଆମେମାନେ ପୁଣି ସେହି ଚଉଦବର୍ଷ ତଳକୁ ଫେରିଗଲୁ ଯେଉଁଠୁ ଆରମ୍ଭ କରିଥିଲୁ । ଆମ ପାଖରେ ଆଉ କିଛି ରହିଲା ନାହିଁ । ଆଗରୁ ମୋ ପାଖରେ ଶକ୍ତି ଥିଲା ବୋଲି କିଛି କରିପାରିଲି ।

ଏବେ ସେତକ ମଧ୍ୟ ନାହିଁ । ଏବେ ମୋର ଝିଅ କ'ଣ କରିବ, ମୁଁ କ'ଣ କରିବି, ମୋର ପୁଅମାନେ କେମିତି ବଞ୍ଚିବେ, ଏକଥା ଭାବିଲେ ମୋର ମୁଣ୍ଡ କାମ କରୁନାହିଁ ।

ବୟସ୍କ ମାନଙ୍କଠାରୁ ସେହି ଗୋଟେ କଥା ବାରମ୍ବାର ଶୁଣିବାକୁ ମିଳୁଥିଲା - "ଆମେ ତ କାହାର କିଛି ଅନ୍ୟାୟ କରିନାହୁଁ । ତେବେ କ'ଣ ପାଇଁ ଆମକୁ ଏମିତି ଭୋଗିବାକୁ ପଡୁଛି । କିନ୍ତୁ ଏହା ବହୁବର୍ଷର ଜାତିଗତ ଭେଦଭାବ ଓ ଉଚ୍ଚଜାତିର କର୍ତ୍ତୃତ୍ୱ ଜାହିର କରିବାର ମାନସିକତା ଯାହାକୁ ଯୁବପିଢ଼ୀ ଶେଷ କରିବାକୁ ଚାହୁଁଛନ୍ତି । କ୍ରିଷ୍ଟା କ୍ଲବ୍‌ର ଯୁବସାଥି ମାନେ ଗାଁରେ ଏକ ନୂତନ ଅଧ୍ୟାୟର ଆରମ୍ଭ କରିବାକୁ ଚାହୁଁଛନ୍ତି ଯାହାକି ଗାଁର ସାମାଜିକ ସମ୍ବନ୍ଧକୁ ବଦଳାଇବା ଦିଗରେ ଏକ ପ୍ରୟାସ ଅଟେ । ଯଦିଓ ଏହାର ମୂଲ୍ୟ ମଧ୍ୟ ସେମାନଙ୍କୁ ଦେବାକୁ ପଡ଼ିଲା । ସେମାନଙ୍କୁ ସାଧାରଣ ଜୀବନକୁ ଫେରିଆସିବା ପାଇଁ ପୁଣି କିଛି ବର୍ଷ ଲାଗିଯିବ । ଯଦିଓ ସେହି ଯୁବବର୍ଗ ଭିତରେ ଏବେବି ସାମାଜିକ ପରିବର୍ତ୍ତନର ଇଚ୍ଛା ପ୍ରବଳ ଅଛି ତଥାପି ଯେଉଁ ଆର୍ଥିକ କ୍ଷତି ଘଟିଲା ଓ ଯେଉଁ ମାନସିକ ଯନ୍ତ୍ରଣା ନେଇ ବୟସ୍କ ଲୋକେ ଓ ପିଲାମାନେ ଏବେ ଯାଉଛନ୍ତି, ସେସବୁ ପୁଣି ସ୍ୱାଭାବିକ ହେବା ପାଇଁ ବେଶ କିଛି ବର୍ଷ ଲାଗିଯିବ । ରିଲିଫ୍ କ୍ୟାମ୍ପର ବ୍ୟସ୍ତତା ସତ୍ତ୍ୱେ କିଛି ପିଲା ସେମାନଙ୍କ ସ୍କୁଲ ପରୀକ୍ଷାକୁ ନେଇ ସଂପୂର୍ଣ୍ଣ ବ୍ୟସ୍ତ । ପୁଣି ଏହି ଯୁବବର୍ଗ ନିଜ ଲୋକଙ୍କ ରହିବା ଓ ଖାଇବା ସହିତ ସମସ୍ତ ରିଲିଫ୍ ବନ୍ଦୋବସ୍ତ ତଥା ପୋଲିସ କେସ୍ ଓ ନିଜ ନିଜର ଘର ତିଆରି କାର୍ଯ୍ୟ ତଦାରଖ କରିବାର ସମସ୍ତ ଦାୟିତ୍ୱ ନେଉଥିବା କଥା ଆମେମାନେ ଦେଖିବାକୁ ପାଇଲୁ ।

## ୧.୪ ବିଭିନ୍ନ ବର୍ଗର ପ୍ରତିକ୍ରିୟା

ରିଲିଫ୍ କ୍ୟାମ୍ପର ସ୍ଥିତି ଆରମ୍ଭରୁ ଆଦୌ ଭଲ ନଥିଲା । ଏହାକୁ ଏତେ ଲୋକଙ୍କ ରହିବା ଯୋଗ୍ୟ କରିବା ପାଇଁ ମଧ୍ୟ ବେଶ କିଛି ଦିନ ଲାଗିଗଲା । ଏଥିରେ ପିଲାମାନେ ଓ ଯୁବକମାନେ ହିଁ ଅଧିକ ଦାୟିତ୍ୱ ନେଇ କାମ କରୁଥିଲେ । ରିଲିଫ୍ କ୍ୟାମ୍ପକୁ ଆସିବା ସମୟରେ ବେଶ କିଛି ଜଣଙ୍କର ଦେହ ଖରାପ ମଧ୍ୟ ହୋଇଯାଇଥିଲା । ସେଥିରୁ ଦଶ ଜଣଙ୍କୁ ମେଲେରିଆ ଓ ବହୁତ ଜଣଙ୍କୁ ଝାଡ଼ା ବାନ୍ତି ହେଉଥିଲା । କିଛି ଲୋକଙ୍କୁ ମିଳିମିଳା ତ ପୁଣି କିଛି ଜଣଙ୍କୁ ଟାଇଫଏଡ୍ ଜ୍ୱର ହେଇଗଲା । ଏହି ଯୁବକମାନେ ଯେଉଁମାନେକି ଆମକୁ ସେ ଅତୀତ ଦିନର ଅନୁଭୂତି କହୁଥିଲେ ସେମାନେ ହିଁ ସମସ୍ତ ଦାୟିତ୍ୱ ନେଇ ଲୋକଙ୍କୁ ସୁସ୍ଥ କରିଥିଲେ । ରିଲିଫ୍ କ୍ୟାମ୍ପକୁ ଆସିବା ସମୟରେ ବହୁତ ଥଣ୍ଡା (ଜାନୁଆରୀ ମାସ) ଥିଲା ଅଥଚ ସରକାରଙ୍କ ତରଫରୁ ପରିବାର ପିଛା ମାତ୍ର

ଗୋଟେ କମ୍ବଳ ଯୋଗାଇ ଦିଆଯାଇଥିଲା । ତୁରନ୍ତ ବନ୍ଧୁବାନ୍ଧବ ଓ ବିଭିନ୍ନ ସଂଗଠନରୁ ଅଧିକ ରିଲିଫ୍ ଆସିବା ପରେ ପରିସ୍ଥିତି ସୁଧୁରିଥିଲା ।

ଆମେ ଯିବା ସମୟରେ ରିଲିଫ୍ କ୍ୟାମ୍ପରେ ୨୦୯ ଜଣଙ୍କ ବ୍ୟବସ୍ଥା କରାଯାଉଥିଲା । ଓଡ଼ିଶା ରିଲିଫ୍ କୋର୍ଡ଼ର ନିୟମ ଅନୁସାରେ ସରକାରଙ୍କ ତରଫରୁ ମୁଣ୍ଡପିଛା ଦୈନିକ ଟ.୩୦/- ଖାଦ୍ୟ ବାବଦକୁ ଦିଆଯାଉଥିଲା । ରାଜ୍ୟ ସରକାର ନିଜର 'ମୁଖ୍ୟମନ୍ତ୍ରୀ ରିଲିଫ୍ ପାଣ୍ଠି'ରୁ ପରିବାର ପିଛା ଏକ ଲକ୍ଷ ଟଙ୍କା ଜନଜାତି ସୁରକ୍ଷା ପାଣ୍ଠିରୁ ଷାଠିଏ ହଜାର ଟଙ୍କା ଓ ଘର ତିଆରି ପାଇଁ ଦୁଇ ଲକ୍ଷ ଦଶ ହଜାର ଟଙ୍କା ଦେଇଛନ୍ତି । ମାତ୍ର ୧୫ ଟି ପରିବାର ଯାହାର ଘର ଯଦିଓ ଆଂଶିକ ଭାଙ୍ଗିଥିଲେ ବି ଘରର ସମସ୍ତ ଆସବାପତ୍ର ଲୁଟ୍ ହୋଇଯାଇଛି ସେମାନଙ୍କି କିଛି ବି କ୍ଷତିପୂରଣ ମିଳିନାହିଁ । ଜାତୀୟ ଅନୁସୂଚୀତ ଜନଜାତି କମିଶନ୍ ଲାଠୋର ଆସିଲା ବେଳେ ଏକଥାକୁ ଜାଣି ସେ ନିଜର ରିପୋର୍ଟରେର ଏ ସଂପର୍କରେ ଉଲ୍ଲେଖ କରିଛନ୍ତି । ସେ ଏକଥା ମଧ ରାଜ୍ୟ ସରକାରଙ୍କୁ ପ୍ରସ୍ତାବ ଦେଇଥିଲେ ଯେ ରିଲିଫ୍ କ୍ୟାମ୍ପରେ ସ୍କୁଲର ଆଉ ଏକ କୋଠରୀ କ୍ଷତିଗ୍ରସ୍ତଙ୍କୁ ଦିଆଯାଉ ଓ ଖାଦ୍ୟର ମାନ କିଛିଟା ଉନ୍ନତ କରାଯାଉ ।

ଆମେ ଲାଠୋର ଯିବା ସମୟରେ (ଏପ୍ରିଲ ୫ ଓ ୬) ଲୋକଙ୍କ ଘର ତିଆରି କାମ ଜୋରଦାରରେ ଚାଲିଥିଲା । ସେତେବେଳେ ପଞ୍ଚାୟତ ନିର୍ବାଚନ (୨୦୧୨) ନିକଟରେ ଥିଲା ଓ କ୍ଷତିଗ୍ରସ୍ତ ପରିବାର ଲୋକଙ୍କ କହିବାର ହେଲା ଯେ ଯେହେତୁ ନିର୍ବାଚନ ପାଖେଇ ଆସୁଛି ତେଣୁ ସରକାର ନିଜ ଆଡୁ ଅଧିକ ତତ୍ପରତା ଦେଖାଉଛନ୍ତି । ତେବେ ସେ ଯାହା ହେଉ ଶାସକ ବିଜୁ ଜନତା ଦଳର କୌଣସି ପ୍ରତିନିଧି କିନ୍ତୁ ଲାଠୋରରେ ଦଳିତମାନଙ୍କୁ ସମବେଦନା ଜଣାଇବା ପାଇଁ ଆସିନାହାନ୍ତି । ଯେଉଁଭଳି ସଂପୂର୍ଣ୍ଣ କ୍ଷୟକ୍ଷତିର ମୂଲ୍ୟାୟନ ସ୍ଥାନୀୟ ପ୍ରଶାସନ ଦ୍ୱାରା କରାଯାଇଛି ତାହାକୁ ନେଇ ବହୁ ପରିବାର ନିଜର କ୍ଷୋଭ ପ୍ରକାଶ କରୁଥିଲେ । ସୀମାଞ୍ଚଳ ସୁନା ଜଣେ ଶ୍ରମିକ ଠିକାଦାର ଓ ସେ ଏ ସଂପର୍କରେ କହିଲେ "ମୋର ଘରେ ଟିଭି, ଫ୍ରିଜ୍, ଗ୍ରାଇଣ୍ଡର, କୁଲର, ସୁନା ଓ ଅନ୍ୟାନ୍ୟ ଜିନିଷକୁ ମିଶାଇଲେ ପ୍ରାୟ ୫ ଲକ୍ଷ ଟଙ୍କାର ଜିନିଷ ଥିଲା । ମାତ୍ର ଉପ-ଜିଲ୍ଲାପାଳ ଆସି ଘରକୁ ଛାଡ଼ି ୧୫ ବ୍ୟାଗ ଧାନ ଓ ମାତ୍ର ଟ.୩୦,୦୦୦/ - ର ଜିନିଷ ଥିଲା ବୋଲି ଉଲ୍ଲେଖ କରିଛନ୍ତି ।

ଜାନୁଆରୀ ୨୩ ର ମଧରାତ୍ରୀରୁ ପୋଲିସ ଆରେଷ୍ଟ କରିବା ଆରମ୍ଭ କଲା । ସେହି ରାତି ମଧରେ ୪୨ ଜଣଙ୍କୁ ପୋଲିସ ଆରେଷ୍ଟ କରିଥିଲା । ସେମାନେ ପ୍ରାୟ

ମେହେର ଗୋଷ୍ଠିର ଥିଲେ । ଏହାର ପ୍ରତିବାଦରେ ମେହେର ଗୋଷ୍ଠିର ମହିଳାମାନଙ୍କ ଦ୍ୱାରା ଜାନୁଆରୀ ୨୪ ଓ ୨୫ ରେ ରାସ୍ତା ଅବରୋଧ କରାଯାଇଥିଲା । ଏହାପରେ ପୋଲିସ ପୁଣି ସେମାନଙ୍କ ମଧ୍ୟରୁ ୪୭ ଜଣଙ୍କୁ ଆରେଷ୍ଟ କଲା । ସେଥି ମଧ୍ୟରୁ ସ୍ୱାସ୍ଥ୍ୟଗତ କାରଣରୁ ତିନିଜଣଙ୍କୁ ଛାଡ଼ି ଦେଲା ଓ ବାକି ୪୪ ଜଣଙ୍କୁ କୋର୍ଟ ପଠାଇଦେଲା । ଇତି ମଧ୍ୟରେ ୬ ଟି କ୍ରିମିନାଲ୍ କେସ୍ ଖପ୍ରାଖୋଲ ଥାନାରେ ହୋଇଛି । ସେଥିରୁ ଦୁଇଟି କେସ୍ ଯଥାକ୍ରମେ ପୋଲିସ ଓ ଦମକଳବାହିନୀ ଦ୍ୱାରା ହୋଇଛି ଓ ଅନ୍ୟ ଚାରୋଟି କେସ୍ ସ୍ଥାନୀୟ ଦଳିତ ପରିବାର କରିଛନ୍ତି ଯେଉଁଥିରେ କି ଅନୁସୂଚୀତ ଜନଜାତି ସୁରକ୍ଷା ନିୟମ ବା (Prevention of Atrocity Act, 1989) ଲାଗୁ କରାଯାଇଛି । ମାତ୍ର ଘାସିରାମ ଅଗ୍ରୱାଲ ଓ ଜଗନ୍ନାଥ ଅଗ୍ରୱାଲ ଯାହାଙ୍କୁ ଦଳିତ ପରିବାରମାନେ ମୁଖ୍ୟ ଷଡ଼ଯନ୍ତ୍ରକାରୀ ଭାବରେ ଏଫ୍.ଆଇ.ଆର୍.ରେ ଉଲ୍ଲେଖ କରିଛନ୍ତି ସେମାନଙ୍କୁ ହାଇକୋର୍ଟରୁ ଜାମିନ ମିଳିଯାଇଛି ।

ଗାଁରେ ଆମେ ବହୁ ଲୋକଙ୍କ ଠାରୁ ଶୁଣିଛୁ ଯେ କେତେକ ନିରୀହ ଲୋକ ମଧ୍ୟ ପୋଲିସର ଏପରି ଚଢ଼ଉର ଅଯଥା ଶିକାର ହୋଇଛନ୍ତି । ଭଗବାନ ମେହେର ଜଣେ ପକ୍ଷାଘାତ ରୋଗୀ (ପାରାଲିସିସ୍) । ଅଥଚ ଯେଉଁଭଳି ପୋଲିସ ତାଙ୍କୁ ବୁଟ୍‌ରେ ମାରିମାରି ଗାଡ଼ି ପର୍ଯ୍ୟନ୍ତ ଚଲାଇ ଚଲାଇ ନେବାର ପୋଲିସ ବର୍ବରତା ସମସ୍ତଙ୍କର ସମକ୍ଷେ  ଅଭିଯୋଗ କରୁଥିଲେ । ତାଙ୍କର ଝିଅ ଓ ସ୍ତ୍ରୀ ପୁଣି ପୋଲିସକୁ ଡ଼ାକ୍ତରୀ ରିପୋର୍ଟ ଦେଖାଇବା ପରେଯାଇ ସେମାନେ ଭଗବାନ ମେହେରଙ୍କୁ ଛାଡ଼ି ଦେଲେ । ସେହିଭଳି ଯୁଧିଷ୍ଠିର ମେହେର ଓ ଆର୍ତ୍ତ ମେହେର ରାତିରେ ସାପ୍ତାହିକ ହାଟରୁ ବେପାରି କରି ଫେରୁଥିଲେ । ସେମାନେ ପୋଲିସ ହାବୁଡ଼ରେ ପଡ଼ିଯିବା ହେତୁ ସେମାନଙ୍କୁ ମଧ୍ୟ ଆରେଷ୍ଟ କରି ନିଆଯାଇଛି । ଲୋକେ ଏକଥା ମଧ୍ୟ ଅଭିଯୋଗ କଲେ ଯେ ବେଶ୍ କିଛି ଅଭିଯୁକ୍ତ ଏବେ ମୁକ୍ତ ଭାବରେ ଗାଁରେ ବୁଲୁଛନ୍ତି । ପୋଲିସ ଯେ ଏଭଳି ଘଟଣାରେ ଦାୟିତ୍ୱପୂର୍ଣ୍ଣ ଭାବରେ ନିଜର କାମ କରିନାହିଁ ସେକଥା ଏଥିରୁ ବେଶ ପ୍ରମାଣିତ ହେଉଛି । ଏକଥା ମଧ୍ୟ ଲୋକେ ଆମକୁ କହୁଥିଲେ ଯେ ବେଶ କିଛି ଦୋଷୀଙ୍କୁ ମାରୱାଡ଼ି ଲୋକେ ଆରମ୍ଭରୁ ସୁରକ୍ଷା ଦେଇ ରଖିଛନ୍ତି । କିଛି ମାରୱାଡ଼ି ବ୍ୟକ୍ତି ନିଜ ଭିତରେ ନୀରବ ହୋଇଯାଇଛନ୍ତି ଅଥବା ଦଳିତଙ୍କ ପ୍ରତି ନିଜର ବିରୋଧକୁ ଚପି କରି ରଖିଛନ୍ତି । ଲାଠୋରର ସେହିଭଳି ଜଣେ ମାରୱାଡ଼ି ବ୍ୟକ୍ତି ଆମକୁ ଏକଥା ମଧ୍ୟ କହିଲେ ଯେ ଏହି ଗଣା ଯୁବକମାନଙ୍କ ହେତୁ ଗଲା ପାଞ୍ଚବର୍ଷ ହେଲାଣି ସେମାନେ ଶାନ୍ତିରେ ରହିପାରିନାହାନ୍ତି । ସେ ଏକଥା ଏପରି ଭାବରେ ବାରମ୍ବାର କହୁଥିଲେ

ଯେମିତିକି ଯଦି ଅନୁସୂଚୀତ ଜନଜାତି ସୁରକ୍ଷା ନିୟମ ନଥାନ୍ତା ତେବେ ସେହିଠାରେ ସେହିଦିନ ସେ ଏହି ବିବାଦକୁ ସମାଧାନ କରିଦେଇଥାନ୍ତେ ।

ଲାଠୋର ଘରପୋଡ଼ି ଘଟଣାର ତିନିଦିନ ପରେ ଜାନୁଆରୀ ୨୫ ରେ ଜିଲ୍ଲା ପ୍ରଶାସନ ନିଜର ଧର୍ମରକ୍ଷା ପାଇଁ ଶାନ୍ତିକମିଟୀ ପ୍ରତିଷ୍ଠା କରିଦେଲେ । ଜିଲ୍ଲାପାଳଙ୍କ ଅଧ୍ୟକ୍ଷତାରେ ବସିଥିବା ସେହି କମିଟୀରେ ପୋଲିସ ଏସ୍.ପି., ଜିଲ୍ଲା ମଙ୍ଗଳ ଅଧିକାରୀ, ପୋଲିସ ଡ଼ି.ଏସ୍.ପି., ସ୍ଥାନୀୟ ସାମ୍ବାଦିକ ସମେତ ଉଭୟ ଗଣା ଓ ମେହେର ଗୋଷ୍ଠିର ପାଞ୍ଚ ଜଣଙ୍କୁ କମିଟୀର ସଦସ୍ୟ ଭାବରେ ନିଆଯାଇଥିଲା । ମାତ୍ର ଉଭୟ ଗୋଷ୍ଠି କେହି ବି ଶାନ୍ତି କମିଟୀର ସେହି ଦିନର ଆଲୋଚନାରେ ଖୁସି ନଥିଲେ । ଉଭୟ ସେହି ସମାନ କଥା କହୁଥିଲେ ଯେ ଜିଲ୍ଲା ପ୍ରଶାସନ ଏହାକୁ ତରବରିଆ ଭାବରେ କୌଣସି ଯୋଜନା ନଥାଇ ଡ଼ାକିଦେଲେ । ଗାଁରେ କେତେକ ସମ୍ମାନୀୟ ବ୍ୟକ୍ତି ଥିଲେ ଯେଉଁମାନେ କି ଶାନ୍ତି ଆଣିବା ଦିଗରେ ହୁଏତ ଉପଯୁକ୍ତ ହୋଇଥାନ୍ତେ, ସେମାନଙ୍କୁ ସେଥିରେ ଅନ୍ତର୍ଭୁକ୍ତ କରାଯାଇନାହିଁ । କିଛି ଦଳିତ ପରିବାର ଏ ଅଭିଯୋଗ ମଧ୍ୟ କରିଥିଲେ ଯେ ସେମାନେ ଅଭିଯୋଗ କରିଥିବା ସୁଶିଲ ଅଗ୍ରୱାଲ ଓ ଗିରୀଶ ନାୟକଙ୍କୁ ମଧ୍ୟ ଜିଲ୍ଲା ପ୍ରଶାସନ ଶାନ୍ତି କମିଟୀର ସଦସ୍ୟ ଭାବରେ ଗ୍ରହଣ କରିଥିଲେ ।

ଏହାପରେ ଜାତୀୟ ସ୍ତରର "ଅନୁସୂଚୀତ ଜନଜାତି କମିଶନ" ଗଲା ମାର୍ଚ୍ଚ ୪, ୨୦୧୨ ରେ ଲାଠୋର ଗସ୍ତରେ ଆସିଥିଲେ । ଏହି ଘଟଣାର ଆରମ୍ଭରୁ କ୍ଷତିପୂରଣ ଦେବା ପର୍ଯ୍ୟନ୍ତ ସେ ଜିଲ୍ଲା ପ୍ରଶାସନର ଅପାରଗତା ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରିଥିଲେ । ଏପରିକି ଡ଼କ୍ଟର ପି.ଏଲ୍. ପୁନିଆଙ୍କ ଅଧ୍ୟକ୍ଷତାରେ ଆସିଥିବା ଏହି କମିଶନଙ୍କ ଅନୁସନ୍ଧାନ ରିପୋର୍ଟରେ ସେ ଘାସିରାମ ଅଗ୍ରୱାଲ ଓ ଜଗନ୍ନାଥ ଅଗ୍ରୱାଲଙ୍କୁ ମୁଖ୍ୟ ଦୋଷୀ ବୋଲି ଦର୍ଶାଇଛନ୍ତି । ନିଜର ରିପୋର୍ଟରେ ସେ ପୋଲିସର ଭୂମିକା ସଂପର୍କରେ ମଧ୍ୟ ସନ୍ଦେହ ପ୍ରକାଶ କରିଛନ୍ତି । ସେ ଲେଖିଛନ୍ତି "ସେହି ଲୁଟ୍ ସମୟରେ ପୋଲିସ ଓ ସାଧାରଣ ପ୍ରଶାସନର ଭୂମିକା ନିଶ୍ଚିତ ରୂପେ ସନ୍ଦେହ ଘେରକୁ ଆସୁଛି ଯାହା ସମ୍ପର୍କରେ କି ଅଧିକ ଅନୁସନ୍ଧାନ ଆବଶ୍ୟକ । ପୋଲିସ ପ୍ରକୃତ ଅଭିଯୁକ୍ତଙ୍କୁ ଆରେଷ୍ଟ କରିନାହିଁ କି ସି.ଆର.ପି.ସି.ର ଧାରା ୮୨ ଅନୁସାରେ ସଂପତ୍ତିର କ୍ଷୟକ୍ଷତି ସମ୍ପର୍କରେ ରିପୋର୍ଟ କରିନାହିଁ ।"

ଜାତୀୟ ସ୍ତରରେ ପ୍ରଥମେ "ଜବାହାରଲାଲ ନେହେରୁ ବିଶ୍ୱବିଦ୍ୟାଳୟ"ର ଛାତ୍ରଛାତ୍ରୀ ମାନେ ଲାଠୋର ଘଟଣାକୁ ନେଇ ପ୍ରତିବାଦ କରିଥିଲେ । ସେମାନେ ଦିଲ୍ଲୀରେ ଧାରଣା ଦେବା ସହିତ ରିଲିଫ୍ ସାମଗ୍ରୀ ଧରି ଲାଠୋର ଆସିଥିଲେ ।

ଏଥିରେ ମୁଖ୍ୟତଃ "ଷ୍ଟୁଡ଼େଣ୍ଟ ଫର ରେଜିଷ୍ଟାନ୍ସ ଡ଼େମୋକ୍ରାଟିକ ଷ୍ଟୁଡ଼େଣ୍ଟ ୟୁନିୟନ' ଭାଗ ନେଇଥିଲେ ।

ଓଡ଼ିଶାରେ ବିଶେଷ କରି ପଶ୍ଚିମ ଓଡ଼ିଶାରେ ଲାଠୋର ଘଟଣାକୁ ନେଇ ପ୍ରତିବାଦ ହୋଇଛି । ପଶ୍ଚିମ ଓଡ଼ିଶା ଦଳିତ ସୁରକ୍ଷା ପରିଷଦ, ଗଣା ସମାଜ ଉନ୍ନୟନ ସମିତି ଓ ଭୁଲିଆ ସମାଜ (ନୂଆପଡ଼ା) ଲାଠୋର ଘଟଣାର ପ୍ରତିବାଦ କରିଥିଲେ । ସେହିପରି କଟ୍ଟାବାଞ୍ଜି ମୁସଲିମ ସମାଜ ତରଫରୁ ରିଲିଫ୍ ସାମଗ୍ର ମିଳିଥିଲା । ମାତ୍ର ଲାଠୋର ଘଟଣାକୁ ନେଇ ଉପକୂଳ ଓଡ଼ିଶାରେ ଏପରିକି ଭୁବନେଶ୍ୱରରେ କୌଣସି ପ୍ରତିକ୍ରିୟା ପ୍ରକାଶ ପାଇନଥିଲା ।

**୧.୫ ଘଟଣା ସମ୍ପର୍କରେ କିଛି ମନ୍ତବ୍ୟ -**

ଏକଥା ସତ୍ୟ ଯେ, ସମଗ୍ର ସ୍ଥିତିକୁ ଅନୁଧ୍ୟାନ କଲେ ଜଣାପଡୁଛି,ଏହି ଦୁଃଖଦ ଘଟଣାକୁ ନିଶ୍ଚିତ ରୂପେ ଆଡ଼େଇ ଦିଆଯାଇ ପାରିଥାନ୍ତା । ପୋଲିସ ଓ ପ୍ରଶାସନ ଦ୍ୱାରା ଉପଯୁକ୍ତ ସମୟରେ କୌଣସି ପଦକ୍ଷେପ ନନେବା ହେତୁ ଦଳିତଙ୍କ ଘର ଜଳିପୋଡ଼ି ପାଉଁଶ ହୋଇଗଲା । ସେମାନଙ୍କର ଏହି ନିଷ୍କ୍ରିୟତା ପଛରେ ସ୍ୱାଭାବିକ ଅବହେଳା ଅପେକ୍ଷା ବରଂ ଯୋଜନାବଦ୍ଧ ଷଡ଼ଯନ୍ତ୍ର ଅଧିକ ପରିମାଣରେ ଦାୟୀ । ଖପ୍ରାଖୋଲର ଥାନା ଅଧିକାରୀଙ୍କ ସ୍ୱୀକାରୋକ୍ତି ଅନୁସାର ସେଦିନ ସେ ଲାଠୋରରେ ଅପରାହ୍ନ ଘ.୩.୩୦ ରୁ ଘ.୩.୪୫ ପର୍ଯ୍ୟନ୍ତ ଥିଲେ । ଏପରିକି ଦଳିତ ପରିବାର ଓ ସ୍ଥାନୀୟ ସାମ୍ବାଦିକ ମଧ୍ୟ ବାରମ୍ବାର ପୋଲିସ ଏସ୍.ପି.ଙ୍କୁ ଜଣାଉଥିଲେ । ତଥାପି ଦଳିତ ପରିବାର ଗୁଡ଼ିକର ସହଯୋଗ ପାଇଁ ପୋଲିସ ଉଚିତ ସମୟରେ ପହଞ୍ଚି ପାରିନଥିଲା ।

୨. ସେଦିନ ସକାଳର ସେହି ସାର୍ଟ କିଣା ଘଟଣାକୁ ଯଦି ଦଳିତଙ୍କ ଘରପୋଡ଼ିର ମୁଖ୍ୟ କାରଣ କୁହାଯିବ ନାହିଁ । ତାହା  ବେଶ କିଛି ବର୍ଷରୁ କୁହୁଳୁଥିବା ଜାତିବିବାଦର ଖୋଲା ରୂପ ଥିଲା । ଏହା ପଛରେ କିନ୍ତୁ ମୂଳ କାରଣ ହେଲା କ୍ରିଷ୍ଟା କ୍ଲବ୍‌ର ଯୁବସାଥିଙ୍କର ଉଚ୍ଚଜାତିର ଲୋକଙ୍କ ପ୍ରତିଷ୍ଠା ଓ ଜାତିଗତ ଅହଂକାରକୁ ଖୋଲାଖୋଲି ବାଧାଦେବା ଓ ସେମାନଙ୍କ ଠାରୁ ମର୍ଯ୍ୟାଦାପୂର୍ଣ୍ଣ ବ୍ୟବହାର ଦାବୀ କରିବା । ଏହାକୁ କିନ୍ତୁ ମେହେର ଓ ମାରଓ୍ୱାଡ଼ି ଗୋଷ୍ଠିର ଏକ ନିର୍ଦ୍ଦିଷ୍ଟ ବର୍ଗ ଗ୍ରହଣ କରିବାକୁ ପ୍ରସ୍ତୁତ ନଥିଲେ ଓ ସେମାନେ ଏମାନଂକୁ ପାନେଦେବାର ଏକ ଉପଯୁକ୍ତ ସୁଯୋଗ ଅପେକ୍ଷାରେ ଥିଲେ ।

୩. ମେହେର ଗୋଷ୍ଠିର ଏକ ବିରାଟ ଅଂଶ ଆର୍ଥିକ ଦୃଷ୍ଟିରୁ ସ୍ୱଚ୍ଛଳ ମାତ୍ର ଶିକ୍ଷା ଦୃଷ୍ଟିରୁ ପଛୁଆ ଅଟନ୍ତି । ଆଜିର ସମୟରେ ଗାଁ ଓ ଛୋଟ ଛୋଟ ସହରମାନଙ୍କରେ

ସେହି ବର୍ଗପାଇଁ କ୍ଷୁଦ୍ର ବ୍ୟବସାୟ ହିଁ ସୁବିଧାଜନକ ଜୀବିକା ହୋଇଯାଇଛି । ଆଜିର 'ମୁକ୍ତ ବାଣିଜ୍ୟ'ର ସମୟରେ ମେହେରଙ୍କ ଭଳି ଗୋଷ୍ଠି ନିଜର କୌଳିକ ବୃତ୍ତି ଛାଡ଼ି ନୂତନ ଅର୍ଥନୀତି ଆଡ଼କୁ ମୁହାଁଇଲେଣି । କାରଣ ପୁରୁଣା ବୃତ୍ତିରେ ସେମାନଙ୍କୁ ଉପଯୁକ୍ତ ପାଉଣା କେବେ ମିଳୁଥିଲା ପୁଣି କେବେ ନାହିଁ । ମାତ୍ର ସେମାନେ ନୂତନ ଜୀବିକାକୁ ଗ୍ରହଣ କରିନେବା ଗାଁର ସାମାଜିକ ଜୀବନକୁ ପ୍ରଭାବିତ କରୁଥିଲା ଅଥଚ ସେମାନେ ସାମାଜିକ ଭେଦଭାବକୁ ଛାଡ଼ିବାକୁ ପ୍ରସ୍ତୁତ ନଥିଲେ । ସେହିପରି ମାରଓ୍ୱାଡ଼ି ଗୋଷ୍ଠିର ବ୍ୟବସାୟୀମାନେ ମେହେର ଗୋଷ୍ଠିର ବ୍ୟବସାୟ କ୍ଷେତ୍ରରେ ଆଗୁଆ ହେବା ହେତୁ ନିଜର ବ୍ୟବସାୟିକ ସ୍ଥିତି ପ୍ରତି କିଛିଟା ପ୍ରମାଦ ଗଣୁଛନ୍ତି । କିନ୍ତୁ ସେହି ସ୍ୱଚ୍ଛଳ ମାରଓ୍ୱାଡ଼ି ବର୍ଗ ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ ଗଣାମାନଙ୍କୁ ସେମାନଙ୍କର ସହଜ ଲକ୍ଷ୍ୟ ବୋଲି ମନେ କରୁଛନ୍ତି । ଏହିସବୁ ବଦଳୁଥିବା ସାମାଜିକ ଓ ଆର୍ଥିକ ସ୍ଥିତିଟି ବହୁବର୍ଷର ଜାତିଗତ ବିବାଦକୁ ଆହୁରି ତେଜେଇ ରଖିଛି, ଯାହାର ଶୀକାର ଗଣାମାନେ ହେଉଛନ୍ତି ।

ହିନ୍ଦୁଧର୍ମକୁ ଦୃଢ଼ କରିବା ଉଦ୍ଦେଶ୍ୟରେ ଯଜ୍ଞ, ମନ୍ଦିର ଇତ୍ୟାଦି ପାଇଁ ଉଦ୍ୟମ କରୁଥିବା ବର୍ଗ ଏହି ଦଳିତମାନଙ୍କୁ ହିଁ ନିଜର ପ୍ରାଥମିକ ଶତ୍ରୁ ବୋଲି ଏବେ ବି ମନେ କରୁଛନ୍ତି ।

୪.ବହୁତ ଲୋକଙ୍କ ଏପରି ମତ ଥିଲା ଯେ, ମାରଓ୍ୱାଡ଼ି ଗୋଷ୍ଠି ଯେଉଁମାନେକି ଗାଁ ମଧ୍ୟରେ ସବୁଠାରୁ ଧନୀ ଓ ଶକ୍ତିଶାଳୀ ସେମାନେ ମେହେର ଓ ଗଣାମାନଙ୍କ ମଧ୍ୟରେ ଲଢ଼େଇ ଲଗେଇ ଦେଇ ନିଜେ ଆହୁରି ଶକ୍ତିଶାଳୀ ହେବାକୁ ଋହିଁଲେ । ମାରଓ୍ୱାଡ଼ି ସ୍ୱଚ୍ଛଳ ଗୋଷ୍ଠିର ମେହେରମାନଙ୍କୁ ଏପରି କାଣ୍ଡ କରିବା ପାଇଁ ଯଦି ସତରେ ବାରମ୍ବାର ଉସ୍କାଉଥିଲେ ତେବେ ତାହା ଅତ୍ୟନ୍ତ ଦୁଃଖଦ ଓ ନିନ୍ଦନୀୟ ଘଟଣା । ମାତ୍ର ମେହେର ଗୋଷ୍ଠି ମଧ୍ୟ କିଛି ପରିମାଣରେ ନିଜେ ଦାୟୀ । ସେମାନଙ୍କ ସାମାଜିକ ଓ ସାଂସ୍କୃତିକ ଦିଗରେ ଆଗକୁ ବଢ଼ିବାର ଇଚ୍ଛାରେ ଯେଉଁ ବାଧା ଆସୁଥିଲା ତାହାର କ୍ରୋଧ ସେମାନେ ଦଳିତଙ୍କ ଉପରେ ସୁଝାଇଥିଲେ । କାରଣ ଓବିସି. ତାଲିକା ଭୁକ୍ତ ମେହେରମାନେ ଅଧିକରୁ ଅଧିକ ମନ୍ଦିର କାର୍ଯ୍ୟକ୍ରମରେ (ମାରଓ୍ୱାଡ଼ିଙ୍କ ସହିତ) ଭାଗ ନେଉଥିଲେ । ଯେମିତିକି ଆମକୁ କୁହାଯାଉଥିଲା "ମେହେରବାଲା ଅଧିକ ବ୍ରାହ୍ମଣ ହେବାକୁ ଚେଷ୍ଟା କରୁଥିଲେ ଏପରିକି ନିଜେ ବ୍ରାହ୍ମଣ ମଧ୍ୟ ନିଜର ପରମ୍ପରାକୁ ରଖିବା ପାଇଁ ଆଜି ସେତିକି ଆଗ୍ରହୀ ହେଉନଥିବେ" ।

୫. ଦଳିତଙ୍କ ଭିତରେ ମଧ୍ୟ ଏହି ଧାର୍ମିକ କାର୍ଯ୍ୟକଳାପ ଓ ମନ୍ଦିର କାର୍ଯ୍ୟକ୍ରମରେ ଅଧିକରୁ ଅଧିକ ଯୋଗଦେବାର ଆଗ୍ରହ ବଢ଼ିଛି । ଯେମିତିକି ଦୁର୍ଗା ପୂଜାରେ ହେଉଥିବା ଯଜ୍ଞରେ ଘିଅ ଢ଼ାଳିବାକୁ ଜିଦି କରିବା ଓ ସେ ଅଧିକାର ନମିଳିବାଟାକୁ ସେମାନଙ୍କ ସ୍ୱାଭିମାନ ପ୍ରତି ଧକ୍କା ବୋଲି ମନେ କରିବା ।

ମାତ୍ର ଏଠାରେ ଆମ କହିବାକୁ ଚାହୁଁଛୁ ଯେ, ଉଚ୍ଚଜାତି ଦ୍ୱାରା କେବଳ ଦଳିତମାନଙ୍କୁ ମନ୍ଦିର ସାମ୍ନାରେ ବାଜା ବଜାଇବା ପାଇଁ ବାଧ କରିବା ଓ ତାହାକୁ ଦଳିତ ଯୁବବର୍ଗ ବିରୋଧ କରିବା ଏକ ପ୍ରଶଂସନୀୟ ଉଦ୍ୟମ । ମାତ୍ର ଏହି ଉଦ୍ୟମ ଆପଣାଛାଏଁ ନଆସି ଯଜ୍ଞରେ ଘିଅ ଢ଼ାଳିବାର ବିବାଦରୁ ଆସିଛି । ଯଜ୍ଞର ଏକ ଅଂଶ ବିଶେଷ ହେବାର ମନୋଭାବ ଏଥିରୁ ସ୍ପଷ୍ଟ ହେଉଛି ।

୬. ଯଦିଓ ଦଳିତଙ୍କ ଉପରେ ଉଚ୍ଚଜାତିଦ୍ୱାରା ଜାତିଗତ ବିଭେଦ, ଘୃଣା ଓ କ୍ରୋଧର ପ୍ରତିଫଳନ ବହୁ ପ୍ରକାରର ହୋଇ ଆସିଛି ଓ ବହୁ ବର୍ଷ ହେଲାଣି ହେଇ ଆସୁଛି ମାତ୍ର ସଂପୂର୍ଣ୍ଣ ଦଳିତ ପଡ଼ାକୁ ଏଥିପାଇଁ ଜାଳିଦେବା – ଏହା ହିନ୍ଦୁତ୍ୱ ପରିବାରର ରଣନୀତି ଭଳି ଲାଗୁଛି । ଅଗଷ୍ଟ–ସେପ୍ଟମ୍ବର ୨୦୦୮ରେ କନ୍ଧମାଳରେ ହୋଇଥିବା ଦଙ୍ଗାରେ ଏମିତି ଦଳିତମାନଙ୍କ ଗାଁକୁ ପୂରା ଜାଳିଦିଆଯାଇଥିଲା । ଆଜିର ଜାତି ଓ ଧନୀ-ଗରିବ ଭେଦଭାବର ସମାଜରେ ବହୁ କଷ୍ଟରେ ନିଜର ସୁରକ୍ଷା ପାଇଁ ଯେଉଁ ଘର ଖଣ୍ଡିକ ଦଳିତଟିଏ କରିଥାଏ ଓ ତାକୁ ନେଇ ଯେଉଁ ସ୍ୱପ୍ନ ତା ଭିତରେ ଅଙ୍କୁରିଥାଏ ତାକୁ ପୂରାପୁରି ଧ୍ୱଂସ କରିଦେଇ ଅତି ଗରିବି ଆଡ଼କୁ ଠେଲି ଦେବାହିଁ ଏପରି ଘରପୋଡ଼ି ପଛର ମୂଳ ଉଦ୍ଦେଶ୍ୟ ହେଇଥାଏ । ଅନ୍ୟସ୍ଥାନ ଭଳି ଲାଠୋରରେ ମଧ୍ୟ ଦଳିତମାନଙ୍କର ଯେଉଁ ସ୍ୱର ଜାତିଭେଦ ଓ ସାମାଜିକ ଭାବରେ ହେଉଥିବା ଅତ୍ୟାଚାର ବିରୁଦ୍ଧରେ ଉଠୁଥିଲା ସେହି ସ୍ୱରକୁ ବନ୍ଦ କରିଦେବା ମଧ୍ୟ ଏପରି ଘରପୋଡ଼ି ପଛରେ ଆଉ ଏକ ଉଦ୍ଦେଶ୍ୟ ।

୭. କେବଳ ଆଇନ କେବେ କେଉଁଠି ଯଥେଷ୍ଟ ହେଇନାହିଁ । ଏହାକୁ ସଫଳ ଭାବରେ କାର୍ଯ୍ୟକାରୀ କରିବାକୁ ହେଲେ ଏକ ଭିନ୍ନ ଜାଗରଣ ମଧ୍ୟ ସବୁ କ୍ଷେତ୍ରରେ ଆବଶ୍ୟକ ପଡ଼ିଥାଏ । ଅଥଚ ଜଣାପଡୁଛି ଯେମିତି ଅଧିକ ଅର୍ଥବଳ ହିଁ ଏହି ସାମାଜିକ ସମୀକରଣକୁ ଓଲଟପାଲଟ କରିଦେବାରେ ପ୍ରମୁଖ କାରଣ ହେଉଛି । ଅନ୍ୟପଟରେ ଦଳିତମାନେ ଯେଉଁମାନଙ୍କ ପାଖରେ କୌଣସି ଆର୍ଥିକ ଶକ୍ତି ନାହିଁ ସେମାନେ ଶିକ୍ଷାକୁ ସମାଜ ପରିବର୍ତ୍ତନର ପ୍ରମୁଖ ଶକ୍ତି ମନେ କରି ଚାଲିଛନ୍ତି । ଏହି ଶିକ୍ଷିତ ଦଳିତ ଯୁବବର୍ଗ ଆମର ଚଳିଆସୁଥିବା ସାମାଜିକ ଭେଦଭାବକୁ ଯେଉଁଭଳି ଉଠାଇ ଦେବାପାଇଁ

ଚେଷ୍ଟା କରୁଥିଲେ ସେଥିପାଇଁ ଲାଠୋର ଗୃହଦାହ ଯେମିତି ଏକ ଦଣ୍ଡ ଥିଲା ଯାହାଦ୍ୱାରା କି ଉଚ୍ଚଜାତିର ଆଧିପତ୍ୟ ଜାରି ରହିବ ।

ସେ ଯାହା ହେଉ, ରିଲିଫ୍ କ୍ୟାମ୍ପ ମଧ୍ୟରେ ଆଶ୍ରିତ ଦଳିତ ପରିବାର ମଧ୍ୟରେ ଥିବା ସାହସ ଓ ଦୃଢ଼ତା ଆମକୁ ଆଉ କିଛି ନୂଆକଥା କହୁଥିଲା । ସେମାନେ ଅତୀତକୁ ପୁଣିଥରେ ଦେଖିବା ପାଇଁ ଆଗ୍ରହୀ ନଥିଲେ । ସେମାନେ ଏହି ଜାତିଭେଦ ବିରୋଧୀ ଲଢ଼େଇକୁ ଆହୁରି ଆଗକୁ ନେବାପାଇଁ ପ୍ରସ୍ତୁତ ହେଉଥିଲେ ଯଦିଓ ଜାଣିଥିଲେ ଯେ ଆଗାମୀ ଦିନଗୁଡ଼ିକ ସେମାନଙ୍କ ପାଇଁ କଦାପି ସହଜ ହେବନାହିଁ ।

**ଦ୍ରଷ୍ଟବ୍ୟ :**

୧) ସମ୍ବାଦ - ଜାନୁଆରୀ ୨୪, ୨୦୧୨

୨) ସମାଜ - ଫେବୃଆରୀ ୫, ୨୦୧୨

୩) ଜନତନ୍ତ୍ର - ଜାନୁଆରୀ (୧୬-୩୧), ୨୦୧୨
ଶ୍ରୀଯୁକ୍ତ ଏନ୍. କିରୋ, ଖପ୍ରାଖୋଲ ପୋଲିସ ଅଧିକାରୀଙ୍କ ସାକ୍ଷାତକାର

୪) କଲାବଜାରର ସହର ଲାଠୋର : ସମୟ - ଜାନୁଆରୀ ୧୬, ୨୦୧୨

୫) ନ୍ୟୁ ଇଣ୍ଡିଆନ୍ ଏକ୍ସପ୍ରେସ - 24th February, 2012
Compensation for Lathor Victims insufficient

**ଟିମ୍ ସଦସ୍ୟ :**

୧) ରଂଜନା ପାଢ଼ୀ (ranjanapadhi@yahoo.mail)

୨) ଖୁଟୁରାମ ସୁନାନୀ (Cell : 9437657625)

୩) ଦେବରଞ୍ଜନ ୪) ନିଗମ

ସଂପର୍କ : email : ranjanapadhi@yahoo.mail
cell : 9437657625
Address : A/202, Sonali Apt., S. Vihar, Bhubaneswar - 21

*********

# The Scheduled Caste and Scheduled Tribe (Prevention ofAtrocities ) Act 1989

The Scheduled Caste and Scheduled Tribe (Prevention of Atrocities ) Act 1989, popularly known as POA Act, is a weapon in hand of dalits and adivasis to prevent themselves from caste Hindus and lead a normal life within the community. Here SCs and STs are those who are in the list of the central government and they can file cases against those who are not SC and ST. The act says the imprisonment up to six months which may extend upto to five years if the offence is proved. The act includes caste offences ranging from forcing such a member to 'drink or eat any inedible or obnoxious substance', to 'forces or causes a member to leave his house, village or other place of residence' etc.

But as it is well imagined the act is not much in use by the SC and ST members due to various reasons. Many government officials have no knowledge about the Act. Though the act speaks in section 4 'Whoever, being a public servant but not being a member of a Scheduled for neglect Caste or a Scheduled Tribe, willfully neglects his duties required to be performed by him under this Act, shall be punishable with imprisonment for a term which shall not be less than six months but which may extend to one year.' Still it is not of much use.

There are few reasons why the act is not coming effectively for the protecting dalits as well as adivasis:

a. Not setting up of special courts under PoA Act 1989 : Exclusive special courts have not been established in Odisha for speedy trial of offences under this act. It took 20 years (from 1989) to realize the urgency of setting up of special court and in a 'State level high power vigilance and monitoring committee', held on 26th May 2010, it was decided to set up 3 special courts in those districts where highest number of caste violence are happening (annual report of the Governor of Odisha on scheduled area to President of India – 2010). But that has not yet been implemented.

b. There is no special police station of SCs and Sts as per the Act. All the existing police stations are working for SC and ST people. They always protect the interest of the upper caste Hindus. They did not impose the sections of PoA act and always make it delay in filing the charge sheet so that the 'charged person' could get bail from the higher court. This is the reason why the conviction rate is very low.

c. During the year 2010-11, 1,580 cases of atrocity on SCs and STs were reported as against 1,541 cases of 2009-10 and 1,639 cases of 2008-09. Out of 1,580 cases reported during the year 2010 -11, charge sheets have been submitted only in 445 cases and 963 cases are pending for investigation. The rate of was same in previous years, more cases were pending than the chargesheeted.

During the year 2009-10, 1541 cases of atrocity on SCs and STs were reported and out of this chargesheets have been submitted in 105 cases, 4 cases ended in 'Final Report True in sufficient evidence', 29 cases were otherwise disposed of and remaining 1480 cases are pending. It does not speak about the previous year's pending cases.

The conviction rate here is very low. Because of the negligence of the police the charges are not properly framed and the perpetrator gets bail. Because there is no special court so a victim looses patience to get justice. Sometimes they do 'amicable' settlement with the perpetrator.

d.The SC and ST reports of last four years speak (2007 to 2011) that a 'sanjog' help line with a toll free number (155335) has been provided for the ST/SC people to register their complaints regarding atrocity, untouchability and other subjects which violates their fundamental rights. (and crores of money have been spent during these years to make the act popularize in among the SCs and STs - as per these reports). But there is no information how many cases came through this toll free number in any of the report. Actually, no one knows about such number in the rural areas.

❏❏❏




ଛୋଟ ଝିଅରବି ଅତ୍ୟାଚାରରୁ ନିସ୍ତାର ନାହିଁ



ଯାର ଜଳିଯାଇଛି ସବୁ ସାର୍ଟିଫିକେଟ

ଜୀବନର ସବୁ ପୁଂଜି ହରେଇଥିବା ଜଣେ ନିସ୍ୱଃ ମାଁ



ଶଂଖର ରାକ୍ଷୁତିରେ ବଢନ୍ତି ଦଳିତ ଅତ୍ୟାଚାରର ଆଉ ଏକ ନିଦର୍ଶନ








ସିମେଣ୍ଟ ଘରବି ଉଜୁଡ଼ିଯାଏ ଘୃଣାର ହାତୁଡ଼ିରେ



ନିଜ ଉଜୁଡ଼ା ଘର ସାମ୍ନାରେ ଅସହାୟ ମୁଦ୍ରାରେ






ଝାଟିମାଟିର ଘରରବା କେତେ ବହପ ଏ ଘୃଣାର ନିଆଁ ସାମ୍ନାରେ







ଝାଟିମାଟିର ଘରରବା କେତେ ବହପ ଏ ଘୃଣାର ନିଆଁ ସାମ୍ନାରେ



ବର୍ଷ ସାରାର ଆହାର ପୋଡ଼ି ପାଉଁଶ



ପୁଅ ବାହାଘର ପାଇଁ ସଂଚିଥିବା କପଡ଼ା ସୁନା ବାସନକୁସନ ସବୁ ଖାର



ଘୃଣା ନିଆଁ ସାମ୍ନାରେ ଦେବାଦେବୀ ବି ଅସହାୟ



ଥାକର ଆମ୍ବେଦକର ରଚନାବଳୀ ସବୁ ପୋଡ଼ି ପାଉଁଶ



ପାରାମାନେ କଣ ବୁଝନ୍ତି ଏ ଦୁଃଖ ନା ବୋହିନେଇ
ପହଁଚାନ୍ତି ବନ୍ଧୁମାନଙ୍କ ପାଖକୁ




ସେମାନଂକ ମୁହଁରେ ସେହି କ୍ରିଷ୍ଣା କ୍ଲବର କାହାଣୀ ଯାହା ଓଲଟପାଲଟ କରିଦେଲା
ସମାଜର ଜାତିବାଦୀ ସ୍ଥିତାବସ୍ଥା



ଲାଠୋରରେ ପିୟୁସିଏଲ୍ ର ସଦସ୍ୟ

